ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଶୀଲାଯୁଂଲ





ଗ୍ରନ୍ଥ ମନ୍ଦିର

ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# କଳା ଫୁଲ

[ ଆଲେକ୍‌ଜାଣ୍ଡର ଡୁମାଙ୍କ The Black Tulip
ବହିର ସଂକ୍ଷିପ୍ତ ଓଡ଼ିଆ ରୂପାନ୍ତର ]

ଅନୁବାଦକ :

ଶ୍ରୀ ବଂଶୀଧର ଦାଶ, ବି. ଏ., ଡି. ଇଡ୍.

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
ଗ୍ରନ୍ଥ ମନ୍ଦିର, କଟକ-୨

ମୁଦ୍ରଣ :
ଗ୍ରାମସେବକ ସମବାୟ ପ୍ରକାଶନ ଲିଃ
ବାଖରାବାଦ, କଟକ-୭୫୩୦୦୨

ପ୍ରଥମ ମୁଦ୍ରଣ : ଜୁନ୍ ୧୯୭୨
ନୂତନ ମୁଦ୍ରଣ : ୧୯୯୭

ମୂଲ୍ୟ : ଟ ୨୦-୦୦

## ଏକ

ହଲଣ୍ଡ ଦେଶର ଡର୍ଟ୍ ସହର ।

ପ୍ରସିଦ୍ଧ ଶେଠ ଭ୍ୟାନ୍ ବାର୍ଲି ମୃତ୍ୟୁଶଯ୍ୟାରେ । ଶେଠଜୀ କିନ୍ତୁ ସୁଖରେ ଜୀବନ କଟାଇଥିଲେ; ବିଳାସବ୍ୟସନରେ ସେ କୌଣସି ଦିଗରୁ କୌଣସି ତ୍ରୁଟି ରଖି ନଥିଲେ । କାହିଁକି ବା ତ୍ରୁଟି କରନ୍ତେ ? ସେ ଯେ କେବଳ ବ୍ୟବସାୟ ବାଣିଜ୍ୟରୁ ଧନ ଉପାର୍ଜନ କରୁଥିଲେ ତା ନୁହେଁ, ପୈତୃକ ଜମିଦାରୀରୁ ସେ ବାର୍ଷିକ ଦଶହଜାର ଗିଲଡ଼ର—ସୁନାମୋହର ଆୟ କରୁଥିଲେ । ଉଭୟ ଦିଗରୁ ଅଜସ୍ର ଆୟ ହେବା ଫଳରେ ଶେଠ ବାର୍ଲିଙ୍କର ଗନ୍ତାଘରେ ନଗଦ ଚାରିଲକ୍ଷ ଗିଲଡର ମହଜୁଦ୍ ହୋଇ ରହିଥାଏ— ଚକ୍‌ମକ୍ ନୂଆ ସୁନାମୋହର ଗୁଡ଼ାକ, କୌଣସିଟା ଦେହରେ ଦୁଇ-ତିନିଜଣଙ୍କ ଅପେକ୍ଷା ଅଧିକ ଲୋକଙ୍କର ହାତ ବି ବାଜି ନଥିବ ।

ଶେଠ ଭ୍ୟାନ୍ ବାର୍ଲି ଥିଲେ ତାଙ୍କ ବାପାଙ୍କର ଏକମାତ୍ର ସନ୍ତାନ ଏବଂ ଶେଠଜୀଙ୍କର ବର୍ତ୍ତମାନ ଗୋଟିଏ ବୋଲି ପୁଅ । ପୁଅଟିର ନାମ କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲି । ହଲଣ୍ଡ ଦେଶର ପ୍ରଧାନ ମନ୍ତ୍ରୀ ଜନ୍ ଡ-ଉଇଟ୍‌ଙ୍କ ସାନ ଭାଇ କର୍ଣ୍ଣେଲିୟସ ଡ଼-ଉଇଟ୍ ଥିଲେ ଶେଠଜୀଙ୍କର ଅନ୍ତରଙ୍ଗ ବନ୍ଧୁ । ଡ-ଉଇଟ୍ ବଂଶର ଘର ବି ଡର୍ଟ୍ ସହରରେ, ତେବେ ସବଦା ରାଜକାର୍ଯ୍ୟରେ ବ୍ୟସ୍ତ ଥିବା ହେତୁ ସେ ପ୍ରାୟତଃ ରାଜଧାନୀ ହେଗ୍‌ଠାରେ ହିଁ ରହନ୍ତି; ପୈତୃକ ସମ୍ପତ୍ତି ତଦାରଖ କରିବାଲାଗି ବର୍ଷକେ ଥରେ ଅଧେ ଡର୍ଟ୍ ବୁଲି-ଆସନ୍ତି; କିନ୍ତୁ ଡର୍ଟ୍ ଆସିଲେ ସେ ଅଧିକାଂଶ ସମୟ ଶେଠଜୀଙ୍କ ଘରେ କଟାନ୍ତି । ସେହି ବନ୍ଧୁତାର ନିଦର୍ଶନ ସ୍ୱରୂପ କର୍ଣ୍ଣେଲିୟସ୍ ଶେଠଙ୍କର ଏକମାତ୍ର ପୁଅକୁ ନିଜର ଧର୍ମପୁତ୍ର କରିନେଇଥିଲେ । ପୁଅଟି ଜନ୍ମହେବା ପରେ କର୍ଣ୍ଣେଲିୟସ୍ ତାକୁ ନିଜ କୋଳରେ ଧରି ଗିର୍ଜା ଯାଇଥିଲେ ଏବଂ

ସେଠାରେ ତାଙ୍କୁ ପବିତ୍ର ଜଳରେ ସ୍ନାନ କରାଇବାପରେ ନିଜର ନାମ ଅନୁଯାୟୀ ପୁଅଟିର ନାମକରଣ କରିଥିଲେ—କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲି ।

କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲି ବର୍ତ୍ତମାନ ନବୀନ ଯୁବକ । ଶେଠଜୀଙ୍କର ସୌଭାଗ୍ୟରୁ କି ସ୍ୱାସ୍ଥ୍ୟ, କି ସୌନ୍ଦର୍ଯ୍ୟ, କି ବିଦ୍ୟା, କି ବୁଦ୍ଧି କୌଣସିଥିରେ ଯୁବକ କର୍ଣ୍ଣେଲିୟସ ନ୍ୟୁନ ନଥିଲେ; କିନ୍ତୁ ଚନ୍ଦ୍ର ଦେହରେ କଳଙ୍କପରି କର୍ଣ୍ଣେଲିୟସ୍‌ଙ୍କଠାରେ ଗୋଟାଏ ଦୋଷ ରହିଥିଲା । ଦୋଷଟା ହେଲା ସେ କୌଣସି ଲାଭଜନକ କାର୍ଯ୍ୟରେ ହାତ ଦେଉନଥିଲେ । ବ୍ୟବସାୟ ବାଣିଜ୍ୟ କିମ୍ବା ସରକାରୀ ଚାକିରିରେ ତାଙ୍କର ଆସକ୍ତି ନଜନ୍ମି ଆସକ୍ତି ଜନ୍ମିଥିଲା ସାହିତ୍ୟଚର୍ଚ୍ଚାରେ ଓ ଫୁଲଚାଷରେ । କିଛି ଦିନ ସୌଖୀନ୍ ଡାକ୍ତରୀ ବି କରିଥିଲେ । ଯାହା କରନ୍ତି ନିଷ୍ଠାର ସହିତ କରନ୍ତି, କିନ୍ତୁ ସେଥିରେ ସାଫଲ୍ୟ ଓ ସୁନାମ ମିଳୁଥିଲେ ବି ଆର୍ଥିକ ଲାଭ କିଛି ହୁଏନାହିଁ । ତେଣୁ ଶେଠଜୀ ପୁଅର ଭବିଷ୍ୟତଟା ଉଜ୍ଜ୍ୱଳ ବୋଲି କହିପାରୁନଥିଲେ ।

ଯାହା ହେଉ ମୃତ୍ୟୁଶଯ୍ୟାରେ ପଡ଼ି ଶେଠଜୀ ପୁଅକୁ ବହୁତ କିଛି ଉପଦେଶ ଶୁଣାଇ କାମନା କଲେ ଯେ ପୁଅ ସୁଖରେ ଜୀବନ କଟାଉ । ପୁଅର ମଙ୍ଗଳ କାମନା କରୁକରୁ ଶେଠଜୀଙ୍କର ପ୍ରାଣବାୟୁ ଉଡ଼ିଗଲା । ସ୍ତ୍ରୀ ତାଙ୍କର ଆଗରୁ ସ୍ୱର୍ଗାରୋହଣ କରିସାରିଥିଲେ । ଫଳରେ ଯୁବକ କର୍ଣ୍ଣେଲିୟସଙ୍କ ଆଗରେ ଏକ ଅବାଧ ଜୀବନର ଧାରା ଖୋଲିଗଲା । ଘରେ ଥାଆନ୍ତି ଜଣେ ବୁଢ଼ୀ ଧାଈମା—ଝୁ୍ୟ । ବୁଢ଼ୀ ଝ୍ୟୁ ହିଁ ତାଙ୍କ ଜୀବନର ଏକମାତ୍ର କର୍ତ୍ତ୍ରୀ ହୋଇ ରହିଲେ ।

ସେତେବେଳେ ୟୁରୋପର ଭଦ୍ର ସମାଜରେ ଫୁଲଚାଷକୁ ଗୋଟିଏ ଆଭିଜାତ୍ୟର ଲକ୍ଷଣ ବୋଲି ଧରାଯାଉଥିଲା । ଅଧିକାଂଶ ଲୋକଙ୍କର ଫୁଲବଗିଚା ରହିଥିଲା । ଲୋକେ ନାନା ଜାତିର ସୁନ୍ଦର ଫୁଲ—ବିଶେଷକରି ଟ୍ୟୁଲିପ୍ ଫୁଲ ଚାଷ କରୁଥିଲେ । ଟ୍ୟୁଲିପ୍ ଗଛର ମୂଳରେ ଗୋଟିଏ କନ୍ଦା ହୁଏ । କନ୍ଦାଟି ଦେଖିବାକୁ ଗୋଟିଏ ବଡ଼ ପିଆଜପରି । କନ୍ଦାଟିକୁ ଅନୁକୂଳ ପାଗ ଦେଖି ପୋତିଦେଲେ ସେଥିରୁ ଅନ୍ତତଃ ତିନୋଟି ପୁଆ ବାହାରେ । ପୁଆଗୁଡ଼ିକ ଅଲଗା ଅଲଗା କରି ପୋତି ଦିଆଯାଏ । ସେଥିରୁ ଗଛ

ବାହାରେ । ଟ୍ୟୁଲିପ୍ ଗଛ ଉଚ୍ଚତାରେ ପଚ୍ଚିଶ ଷାଠିଏ ସେଣ୍ଟିମିଟର ଯାଏଁ ସଳଖ ହୋଇ ବଢ଼ିଯାଏ; ଡାଳ ବା ପତ୍ର ବିଶେଷ କିଛି ନଥାଏ । ଶେଷରେ ଗଛଟିର ତିନି-ଚାରୋଟି ବଲ୍ଲମ ଆକାରର ପତ୍ର ବାହାରେ ଏବଂ ପତ୍ରଗୁଡ଼ିକର ଠିକ୍ ମଝିରେ ଫୁଟିଉଠେ ବହୁ ପାଖୁଡ଼ାଯୁକ୍ତ ଗୋଟିଏ ସୁନ୍ଦର ବଡ଼ ଫୁଲ; ଦେଖିବାକୁ ପ୍ରାୟ ପଦ୍ମଫୁଲ ପରି । ମୁଖ୍ୟତଃ ଏହି ଚାରି ପ୍ରକାରର ଏକରଙ୍ଗୀ ଟ୍ୟୁଲିପ ମିଳିଥାଏ (ଗୋଲାପୀ, ନାଲି, ଧଳା ଓ ହଳଦିଆ); ମିଶାରଙ୍ଗର ଟ୍ୟୁଲିପ ସଂଖ୍ୟାତ କେତେ କଣ । ସୁନ୍ଦର ଆକାର ଓ ରଙ୍ଗ ଯୋଗଁକୁ ଫୁଲଟି ସହଜରେ ମଉଳିଯାଏ ନାହିଁ । ସେଇଥିଲାଗି ଟ୍ୟୁଲିପର ଏତେ ଆଦର ।

ସବୁ ବଡ଼ଲୋକ ତ ଟ୍ୟୁଲିପ ଚାଷ କରନ୍ତି; ଯୁବକ ଭ୍ୟାନ୍ ବାର୍ଲି ବି ସ୍ଥିରକଲେ ସେ ସେ ଟ୍ୟୁଲିପ ଚାଷ କରିବେ । ଶ୍ରଦ୍ଧା, ସମୟ ଓ ଖର୍ଚ୍ଚ କରିବା ଲାଗି ଟଙ୍କା ପଇସା—ଏ ତିନୋଟି ନଥିଲେ ଟ୍ୟୁଲିପ ଚାଷ କରି ହୁଏନି । ବାର୍ଲିଙ୍କର ଏଥିରୁ କେଉଁଟାରେ ଅଭାବ ? ଫୁଲଚାଷ ବିଷୟରେ ଯେଉଁଠି ଯେତେ ବହି ବାହାରିଥିଲା ସେ ସବୁ କିଣି ଆଣିଲେ । ବହି ପଢ଼ି, ଅଭିଜ୍ଞ ମାଳିମାନଙ୍କୁ ପଚାରି ଟ୍ୟୁଲିପ ଚାଷ ବିଷୟରେ ସେ ନାନା କଥା ଶିକ୍ଷା କରିବାକୁ ଲାଗିଲେ । ତା ପରେ ଅସଲ କାମ ଆରମ୍ଭ କରିଦେଲେ । ଡଚ୍ ସହରରେ ବାର୍ଲିବଂଶର ବାଡ଼ି ବଗିଚା ସବୁଠାରୁ ବଡ଼ । ଚାରିପାଖରେ ଉଚ୍ଚଟ ପାଚେରି । ବଗିଚାର ଯେଉଁ ଅଂଶରେ ଯଥେଷ୍ଟ ସୂର୍ଯ୍ୟାଲୋକ ଓ ବାୟୁ ମିଳେ, ସେହି ଅଂଶଟା ସଫା କରାଇ ଦିଆଗଲା । ପୁରୁଣା ମାଟି ଉଠାଇ ସେଠାରେ ନଈପଟୁ, ସବୁଜ ସାର ତଥା ନାନା ପ୍ରକାର ରୋଗ ଓ ପୋକନାଶକ ଔଷଧ ପକାଇ ଫୁଲପଟାଳି ତିଆରି କରାଗଲା । ବିଭିନ୍ନ ଅଞ୍ଚଳରୁ ବିଭିନ୍ନ କିସମର ଟ୍ୟୁଲିପ କନ୍ଦା କିଣିଆଣି ପାଗ ଦେଖି କନ୍ଦା ପୋତାଗଲା । ଧୂଆ ବାହାରିବା ମାତ୍ରେ ସେଗୁଡ଼ିକୁ ଧାଡ଼ି ଧାଡ଼ି କରି ଲଗାଇ ଦିଆଗଲା । ବାର୍ଲି ଏ ସବୁ କାମ ନିଜ ତତ୍ତ୍ୱାବଧାନରେ କରୁଥାନ୍ତି । ଠିକ୍ ସମୟରେ ଗଛ ଉଠିଗଲା ଏବଂ ଫୁଲ ଫୁଟିଲା ଅତୁଳନୀୟ ହୋଇ । ସେଭଳି ସୁନ୍ଦର ଟ୍ୟୁଲିପ ଲୋକେ ପୂର୍ବରୁ କ୍ୱଚିତ୍ ଦେଖିଥିଲେ । ନିଜ ଫୁଲ ଦେଖି ନିଜେ ବିମୁଗ୍ଧ ହୋଇଗଲେ ବାର୍ଲି । ନିଜର ପିତାମାତା ଓ ବଂଶର ନାମ ଅନୁଯାୟୀ

ସ୍ୱରପ୍ରକାର ଉତ୍କୃଷ୍ଟ ଟ୍ୟୁଲିପକୁ ନାମ ବି ଦେଇଦେଲେ—ଜନ୍, କର୍ଣ୍ଣେଲିସ୍ସ୍, ଜେନ୍ ଓ ବାର୍ଲି ଟ୍ୟୁଲିପ ବୋଲି ।

ବାର୍ଲିଙ୍କର ଠିକ୍ ପଡ଼ୋଶାରେ ଆଇଜାକ୍ ବକ୍ସଟେଲ୍ ନାମରେ ଜଣେ ଲୋକ ବାସ କରୁଥିଲା । ତା ଘରଟା ବାର୍ଲିଙ୍କର ଟ୍ୟୁଲିପ୍ ବଗିଚାକୁ ଲାଗି ରହିଥାଏ । ସେ ବି ଜଣେ ଟ୍ୟୁଲିପ ରସିକ । ସେ ଏକଦା ଅତି ସୁନ୍ଦର ଟ୍ୟୁଲିପ ସୃଷ୍ଟି କରି ଫୁଲ ପ୍ରଦର୍ଶନୀରେ ପୁରସ୍କାର ବି ପାଇଥିଲା । ତା ଟ୍ୟୁଲିପର ନାମ ବକ୍ସଟେଲ୍ ଟ୍ୟୁଲିପ । ପଡ଼ୋଶୀ ହେଲେ କଣ ହେବ, ଯୁବକ ବାର୍ଲି ତା ବିଷୟରେ କିଛି ଜାଣନ୍ତି ନାହିଁ । ଯେଉଁ ଲୋକ ନିଜ ଘରୁ ବାହାରକୁ ବାହାରନ୍ତି ନାହିଁ,ସେ ଅନ୍ୟମାନଙ୍କ ବିଷୟରେ ଖବର ବା କିପରି ରଖନ୍ତେ ? କିନ୍ତୁ ବାର୍ଲିଙ୍କର ସମସ୍ତ କାର୍ଯ୍ୟକଳାପ ବକ୍ସଟେଲ୍ର ନଖଦର୍ପଣରେ । ତାଙ୍କର ଟ୍ୟୁଲିପ ନିଶା କଥା ଶୁଣି ବକ୍ସଟେଲ କୌତୂହଳୀ ହୋଇଉଠିଲା । କ'ଣ ସବୁ କରୁଛନ୍ତି ଲକ୍ଷ୍ୟ କରିବାକୁ ହେବ । ଦେଖିବାଟା ଅବଶ୍ୟ କଷ୍ଟକର ନୁହେଁ । ଦୁଇ ଘର ମଝିରେ ଗୋଟିଏ ମାତ୍ର ପାଚେରି । ପାଚେରିକୁ ଲାଗି ଉଠିଥାଏ ଗୋଟିଏ ବଡ଼ ସାଇକୋମାର୍ ଗଛ । ବକ୍ସଟେଲ ଶିଢ଼ି ପକାଇ ଉପରକୁ ଉଠିଲା । ଗଛଫାଙ୍କରୁ ଟ୍ୟୁଲିପ ବଗିଚାକୁ ଚାହିଁଲା । ଆଃ, କି ସୁନ୍ଦର ନ ହୋଇଛି ସତେ ! ରଙ୍ଗ ବି କି ଚମତ୍କାର ! ଏତେ ବଡ଼ ବଡ଼ ଟ୍ୟୁଲିପ ସେ କେଉଁଠି ଦେଖିନାହିଁ । ପ୍ରକୃତରେ ଏସବୁ ଟ୍ୟୁଲିପ୍ ଆଗରେ ବକ୍ସଟେଲ୍ ଟ୍ୟୁଲିପ ଅତି ତୁଚ୍ଛ । ସତକୁ ସତ ସେଇଆହିଁ ଘଟିଲା । ସେବର୍ଷ ଫୁଲ ପ୍ରଦର୍ଶନୀରେ ଜନ୍ ଟ୍ୟୁଲିପ, କର୍ଣ୍ଣେଲିସ୍ସ ଟ୍ୟୁଲିପ, ଜେନ୍ ଟ୍ୟୁଲିପ ଓ ବାର୍ଲି ଟ୍ୟୁଲିପ ଯେତେବେଳେ ଆତ୍ମପ୍ରକାଶ କଲା, ଲୋକେ ସେତେବେଳେ ବକ୍ସଟେଲ୍ ଟ୍ୟୁଲିପ ବିଷୟ କୁଆଡ଼େ ଭୁଲିଗଲେ । କର୍ଣ୍ଣେଲିସ୍ସ୍ ଭ୍ୟାନ୍ ବାର୍ଲିଙ୍କର ଜୟଜୟକାର ପଡ଼ିଗଲା ।

ବକ୍ସଟେଲ୍ର ଅନ୍ତରଟା ହିଂସାରେ ଜଳିଗଲା । ସ୍ୱଗି ନିଆଁବାଣ ହୋଇଗଲା ସେ । ଭାବିଲା, ଯେକୌଣସିମତେ କର୍ଣ୍ଣେଲିସ୍ସ୍ଙ୍କର ଏହି ଶୋଭାସମ୍ପଦକୁ ଦଳି ଚକଟି ନଷ୍ଟ କରିଦେବ । ବହୁତ ଭାବି ଭାବି ସେ ଗୋଟାଏ କୌଶଳ ବାହାରକଲା । ଜାଣିନେଲା ଏଥର ବାର୍ଲିଙ୍କର ଟ୍ୟୁଲିପ

ନଣା ଛଡ଼ାଇ ଦେବ । ଅନ୍ଧାର ରାତି । ଘରର ଦୁଇଟା ବଡ଼ ବିରାଡ଼ିଙ୍କୁ ଗୋଟାଏ ଝୁଡ଼ିରେ ପୂରାଇ ପାଚେରି ଉପରକୁ ନେଇଆସିଲା ବକ୍‌ସଟେଲ୍ । ଗୋଟାକର ପଛ ଗୋଡ଼ ସହିତ ଆରଟାର ପଛଗୋଡ଼ ବାନ୍ଧିଦେଇ ଦୁଇଟା-ଯାକଙ୍କୁ ଏକା ସଙ୍ଗରେ ଟ୍ୟୁଲିପ ବଗିଚା ଭିତରକୁ ଫୋପାଡ଼ିଦେଲା !! ମାଟିରେ ପଡ଼ିବା ମାତ୍ରେ ସେ ଦୁଇଟା ପରସ୍ପରର ବିପରୀତ ଦିଗରେ ଦୌଡ଼ି-ବାକୁ ଲାଗିଲେ, କିନ୍ତୁ ଦୁହେଁ ତ ଏକା ଦୌଡ଼ିରେ ଛନ୍ଦାହୋଇଛନ୍ତି, ଯିବେ କୁଆଡ଼େ ? ଟାଣି ଓଟାରି ହୋଇ, କଳିକଜିଆ କରି ଟ୍ୟୁଲିପ୍, ବଗିଚାଟାକୁ ସେମାନେ ଧ୍ୱସ୍ତବିଧ୍ୱସ୍ତ କରିପକାଇଲେ । ସବୁଗୁଡ଼ାକ ଫୁଲଗଛ ନଷ୍ଟ ହୋଇଗଲା । କେତେବେଳେ ସେ ଦଉଡ଼ି ଛିଣ୍ଡିଲା, କେତେବେଳେ ସେ କଳହ ତୁଟିଲା, ସେ ଖବରେ ଆଉ ଥାଏ କ'ଣ ? ଉଦ୍ଦେଶ୍ୟ ସଫଳ ହେବା ଦେଖି ବକ୍‌ସଟେଲ୍ ମନଖୁସିରେ ଘରକୁ ଚାଲିଗଲା ।

ତା ପରଦିନ ସକାଳେ ବାର୍ଲି ତାଙ୍କର ପ୍ରିୟ ଟ୍ୟୁଲିପ୍‌ଗୁଡ଼ିକୁ ଦେଖିବା ଲାଗି ବଗିଚାକୁ ଆସି ଦେଖନ୍ତି ତ ସର୍ବନାଶ ହୋଇଯାଇଛି । ଏପରି ଚମତ୍କାର ଫୁଲଗଛଗୁଡ଼ାକୁ କିଏ ମେ ଦଳି ଚକଟି ନଷ୍ଟ କରିଦେଇଛି । କିଏସେ ଏ କାଣ୍ଡ କଲା ? ଖୋଜୁ ଖୋଜୁ ଚାରିଆଡ଼େ ବିରାଡ଼ିଙ୍କ ପାଦ ଚିହ୍ନ ଦେଖି ବାର୍ଲିଙ୍କର ମନେପଡ଼ିଗଲା ଗତ ରାତିରେ ସେ ବିରାଡ଼ିଙ୍କର ଝଗଡ଼ାଝଟ ଶବ୍ଦ ଶୁଣିଥିଲେ । ଆରେ ହତଭାଗା ! ଝଗଡ଼ା କରିବାକୁ ଆଉ ସ୍ଥାନ ମିଳିଲାନାହିଁ !! ଏତେଦିନର ପରିଶ୍ରମ ପଣ୍ଡ କରିଦେଲ !!

ବକ୍‌ସଟେଲ୍ ବି ତେଣେ ଭୋରରୁ ପାଚେରି ଉପରକୁ ଉଠିଛି । ଗଛଫାଙ୍କରୁ ଟ୍ୟୁଲିପ୍ କିଆରିର ବିକଳାଙ୍ଗ ରୂପ ଓ ବାର୍ଲିଙ୍କର ବିରସ ବଦନ ଦେଖି ସେ ଗୁଡ଼ାଏ ଖୁସି ହୋଇଗଲା । ବେଶ୍ କରିଛି—ଏଥର କେତେ ଟ୍ୟୁଲିପ ଚାଷ କରିବ କରୁ ।

କିନ୍ତୁ ବାର୍ଲିଙ୍କର ଟ୍ୟୁଲିପ୍ ଚାଷ ବନ୍ଦ ହେଲା ନାହିଁ । ଏ ଫସଲଟା ନଷ୍ଟ ହୋଇଗଲା ସତ; କିନ୍ତୁ ମନେଥିବ, କୁହାଯାଇଛି ପ୍ରତି ଟ୍ୟୁଲିପ୍ କନ୍ଦାରୁ ତିନୋଟି କରି ପୁଆ ବାହାରେ; ଭଲ ଚାଷୀମାନେ ଗୋଟିଏ ପୁଆ ଲଗାଇ ଅବଶିଷ୍ଟ ଦୁଇଟି ସାଇତି ରଖିଥାନ୍ତି । ଯଦି ପ୍ରଥମ ପୁଆରୁ ଗଛ ନ ବାହାରେ

ତେବେ ଅବଶିଷ୍ଟ ଦୁଇଟି ବ୍ୟବହାର କରନ୍ତି । ବାର୍ଲି ବ ପ୍ରତି କନ୍ଦାରୁ ଦୁଇ ଦୁଇଟି ପୁଆ ସାଇତି ରଖିଥିଲେ । ତାଙ୍କର ଦୋତାଲା ଉପରେ ଗୋଟିଏ ଗ୍ରେଟ କୋଠରି ଥାଏ । ତା ଭିତରକୁ ଭଲ ବାୟୁ ଓ ସୂର୍ଯ୍ୟାଲୋକ ଯାତାୟାତ ଲାଗି କୋଠରିରେ ଗୁଡ଼ିଏ କାଚ ଝରକା ରହିଥାଏ । ସେହି ବଖରାଟିରେ ବାର୍ଲି ଟ୍ୟୁଲିପ୍ ଗଛ ସମ୍ବନ୍ଧୀୟ ଯାବତୀୟ କନ୍ଦା, ସାର, ବହିପତ୍ର ସାଇତି ରଖିଥାନ୍ତି । ସେଇଠି ବସି ସେ ନୂତନ ଟ୍ୟୁଲିପ୍ ଗଛ ଲାଗି ଗବେଷଣା କରନ୍ତି । କିଛି ଦିନର ଗବେଷଣା ପରେ ସେ ପୁଣି ଟ୍ୟୁଲିପ୍ ପୁଆ ପୋତିଲେ । କୋଠରିଟିର କାଚ ଝରକାଗୁଡ଼ାକ ବକ୍‌ସଟେଲ୍‌ର ବଡ଼ ସହାୟକ ହେଲା । ସେ ଗୋଟାଏ ଦାମିକା ଦୂରବୀକ୍ଷଣ ଯନ୍ତ୍ର କିଣି ଆଣି ଗଛଫାଙ୍କରେ ରହି ଯନ୍ତ୍ରସାହାଯ୍ୟରେ ସେ ଗବେଷଣା ଘରକୁ ବରାବର ଲକ୍ଷ୍ୟ କଲା । ତନ୍ନ ତନ୍ନ କରି ସବୁ ଦେଖିବାକୁ ଲାଗିଲା ।

ଯାହାହେଉ ଅଳ୍ପ କେତୋଟି ଦିନ ଭିତରେ ବାର୍ଲିଙ୍କର ବଗିଚା ପୁଣି ଟ୍ୟୁଲିପ ଶୋଭାସମ୍ପଦରେ ହସିଉଠିଲା । ଏଥର ସେ ଜଣେ ପ୍ରହରୀ ନିଯୁକ୍ତ କଲେ; ପ୍ରହରୀ ଦିନରାତି ବଗିଚା ଜଗି ରହିଲା । ଯୁବକ ବାର୍ଲି ତାଙ୍କର ନୂତନ ସାଫଲ୍ୟରେ ଆତ୍ମହରା ହୋଇ ଚାଲିଥିବାବେଳେ, ବକ୍‌ସଟେଲ୍ ପ୍ରତିହିଂସା ନେବାର କୌଣସି ଉପାୟ ନପାଇ କେବଳ ନିଜକୁ ଧିକ୍‌କାର କରିବାକୁ ଲାଗିଲା ।

ଠିକ୍ ଏତିକିବେଳେ ହଲାଣ୍ଡ ଫୁଲପ୍ରେମୀଙ୍କ ମହଲରେ ଗୋଟାଏ ଉତ୍ତେଜନାର ସ୍ରୋତ ଖେଳିଗଲା । ହଲାଣ୍ଡରେ ଫୁଲ ରସିକମାନଙ୍କର କେନ୍ଦ୍ର ସ୍ଥାନ ହେଲା ହାର୍ଲେମ ସହର । ସେଠାରେ ପୁଷ୍ପ ପ୍ରଦର୍ଶନୀ ସମିତିର ସଭାପତି ହଠାତ୍ ଏକ ବିରାଟ ପୁରସ୍କାର ଘୋଷଣା କଲେ ଯେ, ଯେଉଁ ବ୍ୟକ୍ତି ଗାଢ଼ କଳାରଙ୍ଗର ଟ୍ୟୁଲିପ ଫୁଲ ଉତ୍ପନ୍ନ କରିପାରିବେ, ପ୍ରଦର୍ଶନୀ ସମିତି ତାଙ୍କୁ ଏକଲକ୍ଷ ଗିଲଡ଼ର୍ (ମୋହର) ପୁରସ୍କାର ଦେବେ । ଟ୍ୟୁଲିପ ଫୁଲର ରଙ୍ଗ ବିଷୟରେ ତ କୁହାଯାଇଛି । ଲାଲ, ଗୋଲାପ, ହଳଦିଆ ଓ ଧଳାକୁ ଛାଡ଼ି-ଦେଲେ ଆଉ ଏକରଙ୍ଗୀ ଟ୍ୟୁଲିପ୍ ପ୍ରାୟ ଦେଖାଯାଏନାହିଁ । ବାଦାମୀ ରଙ୍ଗର ଟ୍ୟୁଲିପ କଥା ଲୋକମୁଖରେ ଶୁଣାଯାଏ; କିନ୍ତୁ କଳା, ତା ପୁଣି ଖାଣ୍ଟି

ଗାଢ଼ କଳା ରଙ୍ଗର ଟ୍ୟୁଲିପ ବିଷୟ କେହି କେବେ କଳ୍ପନା ବି କରି ନ ଥିଲେ । ବୋଲିବା ବାହୁଲ୍ୟ ଯେ ସେହି ବିରାଟ ପୁରସ୍କାର ଘୋଷଣା ପ୍ରକାଶ ପାଇବା ମାତ୍ରେ ହଲାଣ୍ଡର ସବୁ ଟ୍ୟୁଲିପପ୍ରେମୀ ଏକ ଅଭୂତପୂର୍ବ ଉତ୍ସାହ ନେଇ କଳା ଟ୍ୟୁଲିପ୍ ଉତ୍ପନ୍ନ କରିବାକୁ ଲାଗିପଡ଼ିଲେ । କେବଳ ଅର୍ଥଲୋଭରେ ତ ନୁହଁ, ସୁନାମ ଓ ସମ୍ମାନ ଆଶାରେ ବି ।

ବକ୍‌ସଟେଲ୍ ବି ନିଜର ସାମାନ୍ୟ ପୁଞ୍ଜିନେଇ ଚେଷ୍ଟା ଆରମ୍ଭ କରି-ଦେଲା । ଲକ୍ଷେ ସୁନା ମୋହର ! ! କ'ଣ କମ୍ କଥା ! ଯଦି ମିଳିଯିବ ନା, ତେବେ ସାତଜନ୍ମର ଦାରିଦ୍ର୍ୟ ଚିରଦିନଲାଗି ମେଣ୍ଟିଯିବ । ପଇସାପତ୍ର ହୋଇ ଗଲେ ଫୁଲଗଛର ସବୁ ସାଜସରଞ୍ଜାମ କିଣି କମ୍ ପରିଶ୍ରମରେ କମ୍ ସମୟ ଭିତରେ ବେଶି ଲାଭ କରିପାରିବ । କିନ୍ତୁ କଳାରଙ୍ଗର ଟ୍ୟୁଲିପ ତ ହଠାତ୍ ଉତ୍ପନ୍ନ କରିହେବନାହିଁ । ନାଲି ଟ୍ୟୁଲିପ୍‌ରୁ ଫିକା ନାଲି ଟ୍ୟୁଲିପ୍, ଫିକା ନାଲିରୁ ଫିକାବାଦାମୀ ଓ ଫିକାବାଦାମୀରୁ ଗାଢ଼ ବାଦାମୀରଙ୍ଗର ଟ୍ୟୁଲିପ ଉତ୍ପନ୍ନ କରିପାରିଲେ, ତା ପରେ ପ୍ରଭୁଙ୍କର ଆଶୀର୍ବାଦ ଓ ଭାଗ୍ୟ ଟେକିଥିଲେ କଳାଟ୍ୟୁଲିପ୍ ଉତ୍ପନ୍ନ କରିହେବ । ଏଥିପାଇଁ ସାଧନା ଦରକାର । ଦରକାର ସାର, ଔଷଧ । ଦରକାର ବିଦ୍ୟାବୁଦ୍ଧି ଏବଂ ସବୁର ମୂଳରେ ପଇସା, ଯାହା କି ବକ୍‌ସଟେଲ୍‌ର ନାହିଁ; ପୁଣି ବଡ଼ କଥା ହେଲା ଏକାଗ୍ରତା । ବକ୍‌ସଟେଲ୍‌ର ମନଧ୍ୟାନ ସବୁ ଯାଇ କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲିଙ୍କ ଗବେଷଣା ଘରେ । ଯୁବକ ବାର୍ଲି ଏ ଭିତରେ ବହୁତ ବାଟ ଆଗେଇ ଗଲେଣି ; ହୁଏତ ବକ୍‌ସଟେଲ୍ ଦେଖିଲା ଫିକା ନାଲି ରଙ୍ଗର ଟ୍ୟୁଲିପ ସୃଷ୍ଟି କରିବାକୁ ତାକୁ ବର୍ଷଟାଏ ଲାଗିଯିବ ।

ଦିନ ଗଡ଼ି ଚାଲିଲା । ବାର୍ଲି କଣ ସବୁ କରୁଛନ୍ତି, ସେସବୁ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଲକ୍ଷ୍ୟ କରିବାଟା ବକ୍‌ସଟେଲ୍‌ର ପ୍ରଧାନ କାର୍ଯ୍ୟ । କିଛି ଦିନପରେ ସେ ଦେଖିଲା ଆଉ ମାସ ଛଅଟା ଭିତରେ ବାର୍ଲି ଗାଢ଼ ବାଦାମୀ ରଙ୍ଗର ଟ୍ୟୁଲିପ ଉତ୍ପନ୍ନ କରିଦେଇ ପାରିବେ । ହୃଦୟ ତା'ର ହିଂସାରେ ଜଳି ପୋଡ଼ିଗଲା । ବାର୍ଲିଟ୍ୟୁଲିପ୍ କିଆରି ଜଗିବା ଲାଗି ଯେଉଁ ପହରିବାଲାଟି ରଖିଛନ୍ତି, ସେ ଲୋକଟା ଖୁବ୍ ହୁସିଆର; କୌଣସି ଉପାୟରେ

ସେଠାରେ ପହଞ୍ଚି ହେବନାହିଁ । ପ୍ରତ୍ୟେକଟି କନ୍ଦା ପାକଳ ହୋଇ ଆସିଲେ । ବାର୍ଲି ତାକୁ ଉଠାଇନେଇ ଗବେଷଣା ଘରେ ସାଇତ ରଖୁଛନ୍ତି । ସେଥିରେ ନାନା ଜାତିର ମସଲା ଓ ଔଷଧ ଦେଇ ତାକୁ ପାଗଦେଖି ପୁଣି ଲଗାଇ ଦେଉଛନ୍ତି । ବାର୍ଲିଙ୍କ ଚେଷ୍ଟା ସଫଳ ହୋଇଗଲେ ବକ୍‌ସଟେଲର ସବୁ ସୁନାମ, ସବୁ ସାଧନା ମାଟିରେ ମିଶିଯିବ । ନିଜର ପ୍ରତିପକ୍ଷୀଆକୁ ଘୃଣା କରିବା ସଙ୍ଗେସଙ୍ଗେ ବାର୍ଲିଙ୍କର ଗବେଷଣାଘର ଓ ଟ୍ୟୁଲିପ କିଆରିକୁ ତା'ର ଦୂରବୀକ୍ଷଣ ଦେଇ ଚାହିଁବାଟା ନିବିଡ଼ତର ହେବାକୁ ଲାଗିଲା । ପ୍ରତିଦିନ ସେଠାରୁ ଶୁଣାଗଲା ନୂତନ ସାଫଲ୍ୟର ମଧୁର ପଦଧ୍ୱନି ।

ଏତିକିବେଳେ ହଠାତ୍ ଦିନେ ଶୁଣାଗଲା ପ୍ରଧାନ ମନ୍ତ୍ରୀଙ୍କ ସାନଭାଇ କର୍ଣ୍ଣେଲିୟସ ଡ-ଉଇଟ ଡର୍ଟ୍ ସହରକୁ ଆସୁଛନ୍ତି । ଡର୍ଟ୍‌ରେ ଆସି ପହଞ୍ଚୁ ପହଞ୍ଚୁ ସେ ଧର୍ମପୁତ୍ର ବାର୍ଲିଙ୍କ ଘରକୁ ଚାଲିଆସିଲେ । ଗବେଷଣା କୋଠରିରୁ ବାହାରି ଆସି ବାର୍ଲି ତାଙ୍କୁ ଭିତରକୁ ପାଛୋଟି ନେଲେ । ସେତେବେଳକୁ ବକ୍‌ସଟେଲ ଦୂରବୀକ୍ଷଣ ଯନ୍ତ୍ର ଧରି ପାଚେରି ଉପରକୁ ଉଠିଥାଏ । ଘଟଣା ଦେଖି ସେ ମନେ ମନେ ବିରକ୍ତଟାଏ ହେଲା, ଧର୍ମପିତା ଓ ଧର୍ମପୁତ୍ରର ଦେଖାସାକ୍ଷାତରୁ ଦେଖିବ କ'ଣ ? ସେଥିରେ ତା'ର ଯାଏ-ଆସେ କେତେ ? ସେ ପାଚେରି ଚଢ଼ିଥିଲା ବାର୍ଲି ତାଙ୍କ ଟ୍ୟୁଲିପ ଗବେଷଣା ଘରେ କଣ କରୁଛନ୍ତି ଲକ୍ଷ୍ୟ କରିବାକୁ । ଯାହାହେଉ କଣ ସବୁ ଘଟୁଛି ଦେଖିବା ଲାଗି ଚାରିଆଡ଼େ ଟିକିଏ ଆଖି ବୁଲାଇ ଦେଇଗଲା । କିଛି ସମୟର ଶୁଭ ସମ୍ଭାଷଣ ପରେ କର୍ଣ୍ଣେଲିୟସ୍ ଡ-ଉଇଟ ବାର୍ଲିଙ୍କ ସହିତ ଟିକିଏ ଏକାନ୍ତରେ କଥାବାର୍ତ୍ତା ହେବାଲାଗି ଚାହିଁଲେ । ସବୁଠାରୁ ବଡ଼ ଏକାନ୍ତ ସ୍ଥାନ ହେଲା ଗବେଷଣା କୋଠରି । ସୁତରାଂ ବାର୍ଲି ଧର୍ମପିତାଙ୍କୁ ନେଇ ଉପର ମହଲାକୁ ଚାଲିଗଲେ । ବକ୍‌ସଟେଲ୍ ଏଥର ଆଗ୍ରହାନ୍ୱିତ ହୋଇ ଦୂରବୀକ୍ଷଣ ଯନ୍ତ୍ରଟାକୁ ଉପର ମହଲାର ଗବେଷଣା କୋଠରିକୁ ମୁହାଁଇଲା ।

ବକ୍‌ସଟେଲ୍ ଚାହୁଁ ଚାହୁଁ ଭାବିଲା ଡ-ଉଇଟ ହେଲେ ରାଜନୀତିର ଲୋକ । ଫୁଲ ଗବେଷଣାରେ ତାଙ୍କର କିଏ ଥାଏ ? ଆଉ କିଛି କଥା

ଥିବ । କୋଠରୀରେ ପହଞ୍ଚିବାପରେ ଡି-ଉଇଟ ଗୃହଆଡ଼କୁ ଟିକିଏ ସତର୍କ ଦୃଷ୍ଟିରେ ଗୁହିଁ ବାର୍ଲିଙ୍କର କାନପାଖରେ କଣ ସବୁ କହିଲେ । ବାର୍ଲି ମୁଣ୍ଡ ଟୁଙ୍ଗାଇ ଗୁଲିଥାଏ । ଶେଷକୁ କର୍ଣ୍ଣେଲ୍‌ପ୍ୟୁସ୍ ଡି-ଉଇଟ ନିଜ ପୋଷାକର ଭିତର ପକେଟରୁ ତାଡ଼ାଏ ସିଲ୍‌ମୋହର ଥିବା କାଗଜ କାଢ଼ି ବାର୍ଲିଙ୍କ ହାତକୁ ବଢ଼ାଇଦେଲେ । ଏତେ ଦୂରରୁ ସେମାନଙ୍କର କଥୋପକଥନ ତ ଶୁଣିହେଲା ନାହିଁ ; ତେବେ ସେମାନଙ୍କର ଅଙ୍ଗଭଙ୍ଗୀରୁ ଏତିକି ଜାଣିହେଲା ଯେ, ସେ କାଗଜ ତାଡ଼ାଟା କିଛି ଗୁପ୍ତ ଦଲିଲପତ୍ରର; କିନ୍ତୁ ମନେହେଲା ସେସବୁ କାଗଜପତ୍ର ବିଷୟରେ କିଛି ଜାଣିବା ଲାଗି ବାର୍ଲିଙ୍କର କୌଣସି ଆଗ୍ରହ ନାହିଁ । ଯାହାହେଉ ସେ ବହିର ଆଲମାରି ଖୋଲି ତାହାର ଗୋଟିଏ ଥାକରୁ କିଛି କନ୍ଦା ଓ ପୁଆ କାଢ଼ି ତଳେ ଥୋଇଲେ । ବକ୍‌ସଟେଲ୍ ଦେଖିଲା ପ୍ରତ୍ୟେକ କନ୍ଦା ଓ ପୁଆରେ ଗୋଟିଏ କରି ଟିକଟ ଲାଗିଛି । ସେଥିରେ ବୋଧହୁଏ କନ୍ଦାର ନାମ ଓ ପୋତାଯିବା ତାରିଖ ଲେଖାହୋଇଥିବ । ସେହି ଥାକ ଭିତରେ କାଗଜ ତାଡ଼ାଏ ଥୋଇଦେଇ ତା ଉପରେ ସେ କନ୍ଦାଗୁଡ଼ିକ ପୁଣି ରଖିଦେଲେ । ବକ୍‌ସଟେଲ ମନରେ ପ୍ରଶ୍ନଉଠିଲା । ଏପରି ଲୁଚାଇ ରଖିବାର କାରଣ କ'ଣ ? ସମ୍ଭବତଃ କିଛି ସରକାରୀ ଗୁପ୍ତ କାଗଜ ହୋଇଥିବ । ଅନ୍ୟ କୌଣସି ସ୍ଥାନରେ ରଖିଲେ ଶତ୍ରୁପକ୍ଷ ହାତରେ ପଡ଼ିଯାଇପାରେ । ସେହି ଭୟରେ କାଗଜ ତାଡ଼ାଟା ଆଣି ଏପରି ଲୁଚାଇ ରଖିଲେ । ବକ୍‌ସଟେଲ ସେ ଆଲମାରି ଓ ତା'ର ଥାକ ନମ୍ବର ଟିପିରଖିଲା ତା'ର ଡାଇରୀରେ ।

## ଦୁଇ

ବକ୍‌ସଟେଲ ଠିକ୍ ସନ୍ଦେହ କରିଥିଲା । ଡି-ଉଇଟ ଦୁଇଭାଇ ସେତେବେଳକୁ ହଲାଣ୍ଡର ଶାସନ କ୍ଷେତ୍ରରେ ଅତି ଉଚ୍ଚ ଆସନରେ ବସିଥିଲେ ସତ; କିନ୍ତୁ ସେମାନଙ୍କର ଶତ୍ରୁ ଥିଲେ ଅନେକ । ଦୁଇପକ୍ଷର ଦ୍ୱନ୍ଦ୍ୱ ଭିତରେ ଅବସ୍ଥା ଏପରି ଆକାର ଧରିଥିଲା ଯେ ଗୁପ୍ତ ଦଲିଲପତ୍ର ସବୁ

ଲୁଗ୍ଇ ରଖିବା କର୍ଣ୍ଣେଲ୍‌ସ୍ୱପଙ୍କ ପକ୍ଷରେ ଏକାନ୍ତ ଜରୁରୀ ହୋଇପଡ଼ିଥିଲା । ସଂକ୍ଷେପରେ କହିଲେ ଘଟଣା ହେଲା ଏଇଆ—

ସେତେବେଳକୁ ହଲାଣ୍ଡରେ ଅରେଣ୍ଡ ବଂଶୀୟ ରାଜା ଉଇଲ୍‌ସ୍ୱମଙ୍କର ରାଜୁତ୍ୱ ଚାଲିଥାଏ ; କିନ୍ତୁ ସ୍ୱେଚ୍ଛାଚାରୀ ରାଜାମାନଙ୍କର ଯୁଗ ଅତୀତ ହୋଇ-ଯାଇଥାଏ; ହଲାଣ୍ଡରେ ଗଣତନ୍ତ୍ରର ଅଭ୍ୟୁଦୟ ହୋଇଥାଏ ବହୁଦିନ ପୂର୍ବରୁ । ରାଜା ନାମକୁମାତ୍ର ହୋଇ ଗାଦିରେ ବସିଥାଆନ୍ତି; ଲୋକପ୍ରତିନିଧି-ମାନେ ଶାସନକାର୍ଯ୍ୟ କରୁଥାନ୍ତି । କ୍ଷମତାଲୋଲୁପ ଉଇଲ୍‌ସ୍ୱମଙ୍କର ସେଥିଲାଗି ଗଣତନ୍ତ୍ରୀ ନେତାମାନଙ୍କ ଉପରେ ଭୀଷଣ ରାଗ । ତାଙ୍କର ବୟସ ସେତେ-ବେଳକୁ ବେଶି ନୁହେଁ ; କିନ୍ତୁ ଅଳ୍ପ ବୟସରୁ ହିଁ ସେ କୁଟିଳ ରାଜନୀତିରେ ଧୁରନ୍ଧର । କଳେ-ବଳେ-କୌଶଳେ ସେ ଡି-ଉଇଟ ଦୁଇଭାଇଙ୍କୁ ଲୋକରେ ଅପ୍ରିୟ କରାଇ କ୍ଷମତାରୁ ବିତାଡ଼ିତ କରିବା ଲାଗି ଉଦ୍ୟମ ଚଳାଇଲେ ।

ଉଇଲ୍‌ସ୍ୱମ୍‌ଙ୍କର ଏ ଦୁରଭିସନ୍ଧି ବିଷୟ ଜାଣିବାକୁ ପାଇବା ମାତ୍ରେ ଡି-ଉଇଟ ଦୁଇଭାଇ ଫ୍ରାନ୍‌ସର ରାଜା ଚତୁର୍ଦ୍ଦଶ ଲୁଇଙ୍କ ସହାୟତାରେ ହଲାଣ୍ଡରେ ଗଣତନ୍ତ୍ରକୁ ସୁଦୃଢ଼ କରିବାକୁ ଚେଷ୍ଟାକଲେ । ଦୁଇ ଦେଶ ମଧ୍ୟରେ ଗୋଟିଏ ସନ୍ଧି କରିବା ପ୍ରସ୍ତାବରେ ଲୁଇ ସମ୍ମତ ହୋଇଗଲେ । ଉକ୍ତ ସନ୍ଧିର ସର୍ତ୍ତଗୁଡ଼ିକ ସାବ୍ୟସ୍ତ କରିବା ଲାଗି ଡି-ଉଇଟ ଦୁଇଭାଇ ଲୁଇଙ୍କର ସମର-ସଚିବ କାଉଣ୍ଟ ଲ୍ୟୁଭିସ୍‌ଙ୍କ ସହିତ ପତ୍ରାଳାପ ଚଳାଇଲେ ; କିନ୍ତୁ ଏ ସମ୍ବାଦଟା ଉଇଲ୍‌ସ୍ୱମଙ୍କ କାନକୁ ଯିବାକୁ ବେଶି ସମୟ ଲାଗିଲା ନାହିଁ । ସେ ଦେଖିଲେ ଯଦି ଏପରି ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହୋଇଯାଏ; ତେବେ ତାଙ୍କର ଆତ୍ମପ୍ରତିଷ୍ଠାର ସ୍ୱପ୍ନ ହୋଇ ହିଁ ରହିଯିବ । ନିଜେ ତ ପ୍ରକାଶ୍ୟରେ ଗଣତନ୍ତ୍ରର କିମ୍ବା ଗଣତନ୍ତ୍ରୀ ନେତାମାନଙ୍କର ବିରୋଧ କରିପାରିବେ ନାହିଁ, ତେଣୁ ସେ ଟଙ୍କା ପଇସା ଖଟାଇ ଗୁଡ଼ାଏ ଗୁପ୍ତଚର ନିଯୁକ୍ତ କଲେ ଏବଂ ସେହି ଚରମାନେ ଦେଶ ତମାମ ପ୍ରଚାର ଚଳାଇଲେ ଯେ ଡ଼ି-ଉଇଟ୍ ଦୁଇଭାଇ ନିଜର ସ୍ୱାର୍ଥ ସାଧନ ଲାଗି ହଲାଣ୍ଡ ଦେଶକୁ ଚତୁର୍ଦ୍ଦଶ ଲୁଇଙ୍କୁ ବିକି ଦେଉଛନ୍ତି । ଲୁଇଙ୍କ ପରି ପ୍ରବଳ ପ୍ରତାପୀ ଲୋକଙ୍କ ହାତରୁ ମାତୃଭୂମିକୁ ରକ୍ଷା କରିବାକୁ ହେଲେ ଏହି ଡ଼ି-ଉଇଟ ଭାଇ ଦୁଇଟାଙ୍କୁ ଅବିଳମ୍ବେ ଦେଶରୁ ନିକାଲି ଦେବା ଆବଶ୍ୟକ ।

ସ୍ୱାର୍ଥାନ୍ୱେଷୀ, ସ୍ୱାନମତ ଚକ୍ରାନ୍ତକାରୀ ଦୁଷ୍ଟ ଲୋକ କେଉଁଠି ନାହାନ୍ତି ? ସବୁ ଦେଶରେ ସବୁ କାଳରେ ଏଭଳି ଲୋକ ମିଳିବେ, ଖୋଜି ପାରିଲେ ହେଲା । ମହାରାଜାଙ୍କର ଚରମାନେ ଏଭଳି ଗୋଟାଏ ଦୁଷ୍ଟବୁଦ୍ଧି ଲୋକକୁ ଖୋଜି ବାହାର କଲେ । ଲୋକଟାର ନାମ ଟାଇଟେଲର । ସେ ପ୍ରକାଶ୍ୟ ଅଭିଯୋଗ ଆଣିଲା ଯେ ହଲାଣ୍ଡର ମହାରାଜା ଉଇଲିୟମଙ୍କୁ ହତ୍ୟା କରିବା ଲାଗି କର୍ଣ୍ଣେଲିୟସ୍ ଡ଼ି-ଉଇଟ୍ ତାକୁ ପ୍ରଚୁର ଟଙ୍କାର ଲୋଭ ଦେଖାଉଛନ୍ତି । ଉଇଲିୟମଙ୍କର କୁଟିଳ ରାଜନୀତି ସଫଳହେଲା । ସେ ଦେଶର ଅଦାଲତର ବିଚାରପତିମାନଙ୍କୁ ପ୍ରଭାବିତ କରିପାରିଲେ । ଟାଇଟେଲର୍‌ର ଅଭିଯୋଗକୁ କେନ୍ଦ୍ରକରି ମହାରାଜାଙ୍କ ଚରମାନେ ରାଜଧାନୀରେ ଯଥେଷ୍ଟ ଉତ୍ତେଜନା ସୃଷ୍ଟି କରିଦେଲେ । କାଉଣ୍ଟ ଲ୍ୟୁଭିୟଙ୍କ ସହିତ ଚାଲିଥିବା ପତ୍ରାଳାପ ସଂକ୍ରାନ୍ତ ସମସ୍ତ କାଗଜପତ୍ର କର୍ଣ୍ଣେଲିୟସ୍ ଡ଼ି-ଉଇଟ୍‌ଙ୍କ ପାଖରେ ଥାଏ । ରାଜଧାନୀ ଲୋକଙ୍କର ବିକ୍ଷୁବ୍ଧ ମତିଗତି ଦେଖି ସେ ସେହିସବୁ କାଗଜପତ୍ର ନେଇ ଡର୍ଟରେ ଥିବା ନିଜ ଧର୍ମପୁତ୍ର କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲିଙ୍କ ଘରେ ଲୁଚାଇ ରଖିଲେ । ଅବଶ୍ୟ ସେ ସବୁ କାଗଜପତ୍ରରେ କଣ ଲେଖାଥିଲା ତାହା ସରଳମତି ଭ୍ୟାନ୍ ବାର୍ଲିଙ୍କୁ ସେ ମୋଟେ କହିନଥିଲେ; କହିବା ଦରକାର ବୋଲି ବି ବିଚାରି ଅନୁଭବ କରିନଥିଲେ ।

ହଁ, ଟାଇଟେଲରର ଅଭିଯୋଗ ପାଇ ହେଗ୍ ଅଦାଲତରେ କର୍ଣ୍ଣେଲିୟସ୍ ଡ଼ି-ଉଇଟଙ୍କର ବିଚାର ଆରମ୍ଭ ହୋଇଗଲା । ତେଣେ ବିଚାର ଶେଷ ହେବା ପର୍ଯ୍ୟନ୍ତ ତାଙ୍କୁ ବନ୍ଦୀକରି ରଖାଗଲା । ନିଜ ଭାଇ ଯେତେବେଳେ ରାଷ୍ଟ୍ରଦ୍ରୋହ ଅପରାଧରେ ବନ୍ଦୀ, ସେତେବେଳେ ଦେଶର ପ୍ରଧାନ-ମନ୍ତ୍ରୀ ହୋଇ ରହିବା ଆଉ ଉଚିତ ନୁହେଁ ବୋଲି ସ୍ଥିରକରି ଜନ୍ ଡ଼ି-ଉଇଟ୍ ଅବିଳମ୍ବେ ନିଜର ପଦ ତ୍ୟାଗକଲେ । ଏକା ଟେକାରେ ଦୁଇଟା ଚଢ଼େଇ ମଲେ ଦେଖି ମହାରାଜା ଉଇଲିୟମ ଖୁସି ହେଲେ ସତ; କିନ୍ତୁ ସେ ଏତିକରେ ସନ୍ତୁଷ୍ଟ ହେବା ଲୋକ ନଥିଲେ । ସେ ଗୋପନ ଇଙ୍ଗିତ ଦେଇ ଅଦାଲତରେ ବିଚାରପତିମାନଙ୍କୁ ଜଣାଇଦେଲେ ଯେ, କର୍ଣ୍ଣେଲିୟସ୍ ଡ଼ି-ଉଇଟ୍‌ଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉ; କିନ୍ତୁ ଗୋଟାଏ ସମ୍ପୂର୍ଣ୍ଣ ନିରପରାଧ

ବ୍ୟକ୍ତିକୁ ଏତେ ବଡ଼ ଦଣ୍ଡ ଦେବାକୁ ବିଚାରକମଣ୍ଡଳୀ କୁଣ୍ଠାବୋଧ କରି ଶେଷକୁ ତାଙ୍କୁ ନିର୍ବାସନ ଦଣ୍ଡରେ ଦଣ୍ଡିତ କଲେ । ଅଦାଲତର ରାୟ ଶୁଣି ଡିଉକଲ୍‌ଷ୍ଟମ କ୍ରୋଧରେ ଅଗ୍ନିଶର୍ମା ହୋଇଗଲେ; କିନ୍ତୁ ବିଚାରକମଣ୍ଡଳୀ ବିରୁଦ୍ଧରେ ହଠାତ୍ ବା ସେ କ'ଣ କରିପାରିବେ ?



ଯାହାହେଉ ସେମାନଙ୍କର ଗଫଲତିକୁ ସଂଶୋଧନ କରିବା ଲାଗି ତାଙ୍କ ହାତରେ ଆହୁରି ଏକ ଅସ୍ତ୍ର ଥିଲା । ଆରମ୍ଭ କରିଥିବା କାର୍ଯ୍ୟଟାକୁ ଶେଷକରିବା ଲାଗି ସେ ସେହି ଟାଇକେଲରଙ୍କୁ ହିଁ ନିଯୁକ୍ତ କଲେ । ରାଜାନୁଗ୍ରହ ଓ ଧନରତ୍ନର ଲୋଭ ଦେଖି ଟାଇକେଲର୍ ରାଜଧାନୀରେ ଅଧିକ ବିକ୍ଷୋଭର ନିଆଁ ଜାଳିଦେଲା । କଳହପ୍ରିୟ ରକ୍ତଲୋଲୁପ ଗୁଣ୍ଡାଙ୍କର ତ ଅଭାବ ନାହିଁ । ସେହିମାନଙ୍କୁ ଏକଜୁଟ କରି ଟାଇକେଲର ଗୋଟାଏ

ଉଚ୍ଛୃଙ୍ଖଳ ଜନତାକୁ ରାସ୍ତାକୁ ଟାଣି ଆଣିଲା । ଯେ ଯେଉଁ ଅସ୍ତ୍ର ପାଇଲା ଧରି ମାରି ମାରି ଧ୍ୱନି କରି ସମସ୍ତେ ଗ୍ଭଲିଲେ ବୁଇଟେନ ହଫ୍ ଦୁର୍ଗର ବନ୍ଦିଶାଳା ଅଭିମୁଖରେ । ସେହି ବନ୍ଦିଶାଳାରେ କର୍ଣ୍ଣେଲିସ୍ଯୁସ୍ ଡ଼-ଉଇଟଙ୍କୁ ବନ୍ଦୀକରି ରଖାଯାଇଥାଏ । ବନ୍ଦିଶାଳା ରକ୍ଷା ଲାଗି ବାହାରେ ଦଳେ ସୈନ୍ୟ ଜଗି ଥାଆନ୍ତି । ସୈନ୍ୟଦଳର ଅଧ୍ୟକ୍ଷ କାଉଣ୍ଟ ଟିଲି ଭାରି ଟାଣୁଆ ଲୋକ । ସେ ଭଡ଼ାଟିଆ ଗୁଣ୍ଡାଙ୍କ ଧମକରେ ବିଚଳିତ ନହୋଇ ସ୍ପଷ୍ଟ ଜଣାଇ ଦେଲେ ଯେ ନଗରପାଳିକା ସମିତିର ବିନା ଅନୁମତିରେ ସେ ଏ ଜନତାକୁ ବନ୍ଦିଶାଳାର ସୀମା ମଡ଼ାଇ ଦେବେନାହିଁ ।

ଗୁଣ୍ଡାଦଳ କର୍ଣ୍ଣେଲିସ୍ଯୁସ୍‌ଙ୍କର ରକ୍ତ ଦେଖିବା ଲାଗି ଜିଦ୍ ଧରି ବସିଥିଲେ । ସେମାନେ ସଙ୍ଗେ ସଙ୍ଗେ ଗ୍ଭଲିଲେ ନଗରପାଳିକା ଅଫିସକୁ । ସେହିଠାରୁ ଆଦେଶ ଆଣି ପ୍ରଥମେ କାଉଣ୍ଟ ଟିଲିଙ୍କୁ ବନ୍ଦିଶାଳା ପାଖରୁ ହଟାଇଲେ, ପରେ ଅନ୍ୟ କଥା । ଗୁଣ୍ଡାଦଳଙ୍କୁ ଦେଖି ସମିତି ସଭ୍ୟମାନେ ପ୍ରାଣଭୟରେ ଗୋଟାଏ ଆଦେଶନାମା ଜାରି କରିଦେଲେ ଯେ, କାଉଣ୍ଟ ଟିଲି ସୈନ୍ୟଦଳ ଧରି ବନ୍ଦିଶାଳା ପାଖରୁ ଅନ୍ୟତ୍ର ଗ୍ଭଲିଯାଆନ୍ତୁ । ଆଦେଶନାମା ଧରି ଟାଇକେଲର୍‌ର ଦଳ ବିଜୟଗର୍ବରେ ବୁଆଟେନ୍ ହଫ୍ ଆଡ଼କୁ ମାଡ଼ିଆସିଲେ ।

ଇତ୍ୟବସରରେ ବନ୍ଦିଶାଳା ଭିତରେ ଏକ ଦୁଃଖଦ ଘଟଣା ଘଟିଗଲା । ଜନତା ନଗରପାଳିକା ଅଫିସ ଦାଗରେ ଗ୍ଭଲିଥିବାବେଳେ ବନ୍ଦିଶାଳାର ତୋରଣ ପାଖରେ ଗୋଟିଏ ଘୋଡ଼ାଗାଡ଼ି ଆସି ଅଟକିଗଲା । ଗାଡ଼ି ଭିତରୁ ବାହାରି ଆସିଲେ ଜନ୍ ଡ଼-ଉଇଟ ଯେ କି ସେଦିନ ପର୍ଯ୍ୟନ୍ତ ହଲାଣ୍ଡର ପ୍ରଧାନମନ୍ତ୍ରୀ ଥିଲେ । ଆଜି ସେ ଶକ୍ତିହୀନ, ତାଙ୍କର ସେ ପୂର୍ବ ସମ୍ମାନ ଆଉ ନାହିଁ । ଅନ୍ୟ କେହି ହୋଇଥିଲେ ଏପରି ପରିସ୍ଥିତିରେ ଜନତାର ସମ୍ମୁଖୀନ ହେବା ପୂର୍ବରୁ ବହୁବାର ଚିନ୍ତା କରିଥାନ୍ତା । ଜନ୍ ସେଭଳି କାପୁରୁଷ ନୁହନ୍ତି । ଭାଇ ତାଙ୍କର ବନ୍ଦୀ, ନିର୍ବାସନ ଦଣ୍ଡରେ ଦଣ୍ଡିତ । ଅଳ୍ପ ସମୟ ମଧ୍ୟରେ ବନ୍ଦିଶାଳାର ରକ୍ଷକ ତାଙ୍କୁ ବାହାର କରିଦେବେ ଏବଂ ସେ ବାହାରକୁ ଆସିବା ମାତ୍ରେ କ୍ରୁଦ୍ଧ ଜନତା ତାଙ୍କୁ ପ୍ରାଣରେ ମାରି ଟିକି ଟିକି

କରି କାଟି ପକାଇବେ । ସେପରି ବିପଦ ଉପସ୍ଥିତ ହେବା ପୂର୍ବରୁ ଭାଇକୁ ଦୁର୍ଗରୁ ବାହାର କରିନେଇ ସହର ଉପକଣ୍ଠରେ ସମୁଦ୍ରକୂଳରେ ଅପେକ୍ଷା କରି ରହିଥିବା ଗୋଟିଏ ଜାହାଜରେ ପଳାୟନ କଲେ ଜୀବନ ତ ରକ୍ଷା ହୋଇଯିବ, ତା ସଙ୍ଗେ ସଙ୍ଗେ ଅଦାଲତର ଆଦେଶ ବି ପାଳିତ ହୋଇଯିବ । ତେଣୁ ମୁଣ୍ଡ ଉପରେ ଏତେ ବିପଦ ରହିଥିଲେ ବି ଜନ୍ ଦୁର୍ଗ ତୋରଣ ପାରହୋଇ ବନ୍ଦିଶାଳା ଭିତରକୁ ପଶିଗଲେ ।

ଅତୀତରେ ଜନ୍ ଡି-ଉଇଟଙ୍କ ଦୟାରୁ ବନ୍ଦିଶାଳାର ରକ୍ଷକ ଗ୍ରାଇଫସର ବହୁ ଉପକାର ସାଧିତ ହୋଇଥିଲା । ଆଜି ଜନ୍ ତାହାର ଦୟାପାଇଁ ଅନୁନୟ ବିନୟ କରି କହିଲେ, "ଗ୍ରାଇଫସ, ତୁମେ ତ ଜାଣ ମୋ ଭାଇ କର୍ଣ୍ଣେଲିୟସ ଡି-ଉଇଟଙ୍କୁ ନିର୍ବାସନ ଦଣ୍ଡ ମିଳିଛି; ଦୟାକରି ଯଦି ତାକୁ ଟିକିଏ ଶୀଘ୍ର ବିଦାୟ କରିଦିଅନ୍ତ ତେବେ ମୁଁ ବଡ଼ ଉପକୃତ ହୁଅନ୍ତି ।"

"ଠିକ୍ ଅଛି; ଶୀଘ୍ର ଚାଲିଗଲେ ମୁଁ ବି ଟିକିଏ ନିଶ୍ଚିନ୍ତ ହେବି" କହି ଗ୍ରାଇଫସ୍ ଜନ୍‌ଙ୍କୁ ଉପର ମହଲାକୁ ପଠାଇଦେଲା । ଜଣେ ରକ୍ଷୀ ଯାଇ ଉପର ମହଲାରେ ଯେଉଁ କୋଠରିରେ କର୍ଣ୍ଣେଲିୟସ ବନ୍ଦୀ ହୋଇ ରହିଥିଲେ, ସେହି କୋଠରିର ଦ୍ୱାର ଖୋଲିଦେଲା । ସାନ ଭାଇର କରୁଣ ଅବସ୍ଥା ଦେଖି ଜନ୍‌ଙ୍କ ଆଖିରୁ ଅଶ୍ରୁଧାର ବୋହି ଆସିଲା । ସେ ଯୁଗରେ ଗୋଟିଏ ରୀତି ଥିଲା ଯେ ଅଭିଯୁକ୍ତ ଆସାମୀ ବିଚାରାଧୀନ ଥିବାବେଳେ ବି ତାକୁ ଶାରୀରିକ ନିର୍ଯାତନା ଦିଆଯାଇ ପାରିବ । ଏ କ୍ଷେତ୍ରରେ ରାଜା ଉଇଲିୟମଙ୍କର ଗୋପନ ନିର୍ଦ୍ଦେଶ ପାଇ କର୍ଣ୍ଣେଲିୟସ୍‌ଙ୍କୁ ଅତ୍ୟଧିକ ନିର୍ଯାତନା ଦେଇ କୌଣସିମତେ ତାଙ୍କ ମୁହଁରେ ଅଭିଯୋଗଟାକୁ ସ୍ୱୀକୃତ କରାଇନେବା ଲାଗି ଯଥେଷ୍ଟ ପ୍ରଚେଷ୍ଟା ଚାଲିଥିଲା । ପ୍ରହାର ଓ ଆଘାତ ଫଳରେ ତାଙ୍କ ହାତ ଓ ପାଦର ଆଙ୍ଗୁଠିଗୁଡ଼ାକ କ୍ଷତବିକ୍ଷତ ହୋଇ-ଯାଇଥିଲା । ତେଣୁ ତାଙ୍କ ହାତ ଓ ପାଦରେ ବ୍ୟାଣ୍ଡେଜ୍ କରାଯାଇଥାଏ; ସେ ପଙ୍ଗୁ ହୋଇ ଗୋଟିଏ ବିଛଣାରେ ଶୋଇଥିଲେ ।

ଅଶ୍ରୁ ମୋଚନ କରିବା ଲାଗି ବି ସମୟ କାହିଁ ? ଅନ୍ତରର ସମସ୍ତ କୋହ ଚାପିରଖି ଜନ୍ ଅଳ୍ପ କେତୋଟି ପଦରେ ଜଣାଇଦେଲେ ଯେ,

ଯଥାଶୀଘ୍ର ସେ ସ୍ଥାନ ଛାଡ଼ି ଚାଲିଯିବା ଉଭୟଙ୍କ ପକ୍ଷରେ ଶ୍ରେୟସ୍କର, ନଚେତ୍ ଜୀବନ ଉପରେ ଆଘାତ ଆସିପାରେ ।

"କାହିଁକି, ଜୀବନ ଉପରେ ଆଘାତ ଆସିବ କାହିଁକି ?"— କର୍ଣ୍ଣେଲ୍‌ସ୍ଥପ୍ ବୁଝିପାରିଲେନାହିଁ ।

"ହେଇଟି, ଶୁଣ !" କହି ଜନ୍ ଦୁର୍ଗଦ୍ୱାରରୁ ମାଡ଼ିଆସୁଥିବା ହିଂସ୍ର ଚିତ୍କାର ଆଡ଼େ କାନେଇଲେ । ନଗରପାଳିକା ସମିତିର ଆଦେଶନାମା ନେଇ ଜନତା ସେତେବେଳକୁ ଦୁର୍ଗଦ୍ୱାରରେ ଆସି ପହଞ୍ଚିଗଲାଣି । କର୍ଣ୍ଣେଲ୍‌ସ୍ଥପ୍ ଅବିଳମ୍ବେ ସବୁ ବୁଝିପାରି ଅତି କଷ୍ଟରେ ଉଠିବସିଲେ ।

ସେତେବେଳକୁ ଜନ୍‌ଙ୍କର ମନେପଡ଼ିଲା କାଉଣ୍ଟ ଲ୍ୟୁଭସ୍ୱଙ୍କ ଚିଠିପତ୍ର କଥା । ସେ କହିଲେ, "ଆମେ ତ ଦେଶ ତ୍ୟାଗ କରି ଯାଉଥାଉଁ । ଯିବାଆଗରୁ ସେ ନଥିପତ୍ର ନଷ୍ଟ କରିଦେବା ଉଚିତ ହେବ ନାହିଁ ?"

କର୍ଣ୍ଣେଲ୍‌ସ୍ଥପ୍ ଟିକିଏ ଚିନ୍ତା କରି କହିଲେ, "ଠିକ୍ କଥା; ସେଗୁଡ଼ାକ ଯଦି ଆମ ଶତ୍ରୁ ହାତରେ ପଡ଼େ, ତେବେ ଆମ ଉଭୟଙ୍କୁ ମୃତ୍ୟୁଦଣ୍ଡ ମିଳିବ; କିମ୍ବା ଭବିଷ୍ୟତରେ ଦେଶକୁ ଫେରିବା ବନ୍ଦ ହୋଇଯିବ ।"

"କାହିଁ ସେଗୁଡ଼ାକ ?"

"ସେ ଗୁଡ଼ିକ ଡଚ୍‌ରେ ଅଛି, ମୋ ଧର୍ମପୁତ୍ର ବାର୍ଲି ପାଖରେ ।"

ଚମକି ଉଠିଲେ ଜନ୍ । "କଣ କହୁଛୁ ? ଆରେ, ସେ ନିରୀହ ପିଲାଟାକୁ ଆଣି ଏଭିତରେ ପୁରାଇଛୁ ?"

"ନା ନା, ଭୟ କରିବାର କ'ଣ ଅଛି ? ସେ ବିଚରା ତ ଏସବୁ କାଗଜରେ କ'ଣ ଅଛି ତାହା ଜାଣେନା ।"

"କିନ୍ତୁ ବାର୍ଲି ପାଖରେ ସେ ସବୁ ରଖି ଚାଲିଯିବା ଉଚିତ ହେବ ନାହିଁ ।"

"ନା, ତେବେ ଯିବା ପୂର୍ବରୁ ତାକୁ ଖବର ଦେଇ ସେଗୁଡ଼ାକୁ ପୋଡ଼ିଦେବା ଉଚିତ ହେବ । କିନ୍ତୁ ବର୍ତ୍ତମାନ ଅବସ୍ଥାରେ ଉପାୟ କଣ ?"

"ଉପାୟ ଅଛି । ମୋର ବିଶ୍ୱସ୍ତ ଚାକର ଫେଇକ୍ ଅଛି । ତୁ ଖଣ୍ଡେ ଚିଠି ଲେଖିଦେ, ସେ ଶୀଘ୍ର ନେଇ ବାର୍ଲିଙ୍କୁ ଦେଇ ଆସିବ ।"

"କିନ୍ତୁ ମୋର ଏ ହାତରେ ତ କିଛି ଲେଖିବା ସମ୍ଭବ ହେବନାହିଁ ।"

"ଅସମ୍ଭବକୁ ବି ସମ୍ଭବ କରିବାକୁ ହେବ । ଚେଷ୍ଟା କର ।"

"ପେନ୍‌ସିଲ୍‌ଟାଏ ଅଛି, କିନ୍ତୁ କାଗଜ···"

ଖୋଜି ଖୋଜି କର୍ଣ୍ଣେଲ୍‌ସ୍ମିଥ୍‌ଙ୍କର ବନ୍ଦୀ ଜୀବନର ଏକମାତ୍ର ସାନ୍ତ୍ୱନା ବାଇବେଲ୍ ଖଣ୍ଡିକ ମିଳିଲା । ସେଥିରୁ ପ୍ରଥମ ଅଲେଖା ପୃଷ୍ଠାଟି ଚିରି କର୍ଣ୍ଣେଲ୍‌ସ୍ମିଥ୍ ଯଥାସାଧ୍ୟ ଚେଷ୍ଟା କରି ଲେଖିଲେ—

"ପ୍ରିୟ ପୁତ୍ର ଭ୍ୟାନ୍ ବାର୍ଲି,

ତୁମ ପାଖରେ ମୁଁ ଯେଉଁ କାଗଜ ତାଡ଼ାଟି ରଖିଦେଇ ଆସିଛି, ସେଇଟି ପୋଡ଼ିଦିଅ । ମୋଟେ ଖୋଲିବ ନାହିଁ । ସେଥିରେ କଣ ଲେଖା-ହୋଇଛି ତାହା ନ ଜାଣିବା ହିଁ ତୁମ ପକ୍ଷରେ ମଙ୍ଗଳକର । ଯଦି ମୋର ଦାଦାଙ୍କୁ ଓ ମୋତେ ବଞ୍ଚାଇବାକୁ ଚାହଁ, ତେବେ ଏହିକ୍ଷଣି କାଗଜତାଡ଼ାଟି ପୋଡ଼ିଦିଅ । ବିଦାୟ !

ସ୍ନେହାଶୀର୍ବାଦ—

୨୦, ଅଗଷ୍ଟ ୧୭୭୨ କର୍ଣ୍ଣେଲ୍‌ସ୍ମିଥ୍ ଡି-ଉଇଟ୍"

ଲେଖି ଲେଖି କର୍ଣ୍ଣେଲ୍‌ସ୍ମିଥ୍‌ଙ୍କ ହାତରୁ ଟୋପାଏ ରକ୍ତ ଝରି ପଡ଼ିଲା ଚିଠି ଉପରେ । ସେଟାକୁ ପୋଛିନେଇ ଚଳିତୁ ଚଳିତୁ ଜନ୍ ସ୍ମିଥ୍ କ୍ରେଇକ୍‌କୁ ଡାକି କହିଲେ, "ଯେତେ ଶୀଘ୍ର ପାର ଡର୍ଟ୍ ଚାଲିଯାଅ ଓ ସେଠାରେ କର୍ଣ୍ଣେଲ୍‌ସ୍ମିଥ୍ ଭ୍ୟାନ୍ ବାର୍ଲିଙ୍କ ହାତରେ ଚିଠିଟି ଦେଇଦିଅ । ଶୁଣ, ଦୁର୍ଗଦ୍ୱାରରେ ଜୁଣ୍ଡ ହୋଇଥିବା ଜନତାକୁ ପାରି ହୋଇ ନିରାପଦ ସ୍ଥାନକୁ ଚାଲିଯିବା ସଙ୍ଗେ ସଙ୍ଗେ, ତୁମେ ହୁଇସିଲ୍ ବଜାଇବ । ହୁଇସିଲ୍ ଶୁଣିଲେ ଆମେ ବାହାରିବୁ ।"

କ୍ରେଇକ୍ ଯଥା ଆଜ୍ଞା କହି ଚାଲିଗଲା । ଅଳ୍ପସମୟ ମଧ୍ୟରେ ତାର ହୁଇସିଲ୍ ବି ଶୁଭିଲା । ସଙ୍ଗେ ସଙ୍ଗେ ଜନ୍ ଆହତ କର୍ଣ୍ଣେଲ୍‌ସ୍ମିଥ୍‌ଙ୍କୁ ସଙ୍ଗରେ ନେଇ ବାହାରିପଡ଼ିଲେ । ଶିଡ଼ି ଓହ୍ଲାଇ ଆସୁଛନ୍ତି, ଦେଖିଲେ ଆଗରେ ଠିଆ-ହୋଇଛି ଗୋଟିଏ ସୁନ୍ଦରୀ ତରୁଣୀ । ତରୁଣୀଟି କହିଲା, "ଡି-ଉଇଟ୍

ମହାଶୟ, ସଦର ଫାଟକ ଦେଇ ଦୁର୍ଗରୁ ବାହାରିବାକୁ ସାହସ କରନ୍ତୁ ନାହିଁ । ଗୁଣ୍ଡାମାନେ ଆପଣଙ୍କ ଜୀବନ ରଖିବେ ନାହିଁ ।"



"ତା'ହେଲେ ଉପାୟ ?" ହତାଶ ହୋଇ ଜନ୍ ପଚାରିଲେ ।

"ପଛପଟ ଫାଟକ ଦେଇ ଚାଲିଯିବେ ।"

"ଗ୍ରାଇଫଥ୍ କଣ ପଛ ଫାଟକ ଖୋଲିବ ?"

"ମୋତେ ନୁହେଁ । ମୁଁ ସେହି କଥା ଜାଣି ବାପାଙ୍କ କୋଠରିରୁ ପଛ ଫାଟକର ଚାବିଟା ଲୁଚାଇ ନେଇ ଆସିଛି । ଚାଲନ୍ତୁ ମୁଁ ଖୋଲିଦିଏ ।"

ଏ ଅପ୍ରତ୍ୟାଶିତ ଦସ୍ୟାରେ ବିମୁଗ୍ଧ ହୋଇଗଲେ ଦୁଇଭାଇ । ବାହାରେ ତେଣେ ସେମାନଙ୍କର ରକ୍ତ ଶୋଷା ଘେନିବା ଲାଗି ଜନତା ଚିତ୍କାର କରୁଛି । ଭିତରେ ଏଣେ ଜଣେ ସରଳା ଅବଳା ସେମାନଙ୍କୁ ରକ୍ଷାକରିବା ଲାଗି ଆଗେଇ ଆସିଛି । ଏ ନିଶ୍ଚୟ ଭଗବାନଙ୍କର ଆଶୀର୍ବାଦ । ତଥାପି ଜନ୍ ପଚାରିଲେ, "କିନ୍ତୁ ଆମ ଗାଡ଼ିଟା ତ ସଦର ଫାଟକ ପାଖରେ ରହିଲା । ପଛ ଫାଟକବାଟେ ବାହାରିଗଲେ ଲାଭ କ'ଣ ? ସେହି ଏକା ଦଶା ଭୋଗିବୁ ନାହିଁ ?"

"କିନ୍ତୁ ଆପଣଙ୍କ ନାମ କହି ମୁଁ ଗାଡ଼ିବାଲାକୁ ଖବର ଦେଇଛି, ସେ ଆସି ଠିକ୍ ପଛ ଫାଟକ ପାଖରେ ଅପେକ୍ଷା କରିଥିବ ।"

"ଧନ୍ୟବାଦ, ଧନ୍ୟବାଦ, ମାଆ ! କ'ଣ ତୁମର ନାମ ?"

"ରୋଜା ।"

"ରୋଜା ମାଆ, ଆମର ଏ ବିପଦବେଳରେ ତୁମକୁ କଣ ଦେଇ ଯେ ଆମେ ତୁମ ଋଣମୁକ୍ତ ହେବୁ ବୁଝିପାରୁନାହୁଁ । ନିଅ, ଏ ବାଇବେଲ୍ ଖଣ୍ଡି ନିଅ ! ଏହି ପବିତ୍ର ଗ୍ରନ୍ଥଟି ଦେଖିଲେ, ଅନ୍ତତଃ ଆମ ବିପଦ ମନେ ପଡ଼ୁଥିବ ।"—କହି ଦୁଇଭାଇ ଆଗପଛ ହୋଇ ଫାଟକ ଆଡ଼କୁ ମୁହାଁଇଲେ । ବାଇବେଲ୍‌ଟିକୁ ପୋଷାକ ଭିତରେ ଲୁଚାଇ ରଖି ରୋଜା ଯାଇ ପଛ ଫାଟକ ଖୋଲିଦେଲା; ଡି-ଉଇଟ୍ ଦୁଇ ଭାଇ ବାହାରିଯିବା ପରେ ଫାଟକ ବନ୍ଦକରି ତାଲାପକାଇଦେଲା ।

ତେଣେ ସଦର ଫାଟକ ପାଖରେ ଜନତା ଉତ୍ତ୍ୟକ୍ତ ଅସମ୍ଭାଳ ହୋଇ ଉଠିଲାଣି । ଗ୍ରାଇଫସ୍ ଫାଟକ ଖୋଲିବାକୁ ନାରାଜ । ସେ ଜାଣେ ଫାଟକ ଖୋଲିଯିବା ସଙ୍ଗେ ସଙ୍ଗେ ଲୋକେ ଯାଇ ଡି-ଉଇଟ୍‌ଙ୍କୁ ହତ୍ୟାକରିବେ । କିନ୍ତୁ କଥାଟା ସେତିକରେ ତୁଟି ନଯାଇ ଶେଷକୁ ଗ୍ରାଇଫସ୍ ବିରୁଦ୍ଧରେ କର୍ତ୍ତବ୍ୟ ଚ୍ୟୁତି ଅଭିଯୋଗ ଅଣାଯିବ । ବିଚରା କରେ କ'ଣ ?

ବାପା ଗ୍ରାଇଫସ୍ ହତବୁଦ୍ଧି ହୋଇପଡ଼ିଥିବା ଅବସ୍ଥାରେ ଝିଅ ରୋଜା ଯାଇ ସେଠାରେ ପହଞ୍ଚିଗଲା । ଗ୍ରାଇଫସ୍ ପଚାରିଲା, "ରୋଜା, ଏବେ ମୁଁ କ'ଣ କରିବ କହିଲୁ ? ସେମାନେ ଯେ ଫାଟକ ଭାଙ୍ଗି ଭିତରକୁ ମାଡ଼ି-ଆସିବାକୁ ବସିଲେଣି !"

"ଭାଙ୍ଗନ୍ତୁ ନା ଫାଟକ ।''

''ହଇଲେ, ଭିତରେ ପଶିଲେ ସେମାନେ ପ୍ରଥମେ ମୋ ମୁଣ୍ଡରେ ଘାଗ ଛୁଣ୍ଡେଇଦେବେ ନା ?"

''କାହିଁକି, ବାପା ! ଚାଲ ଆମେ ଦୁର୍ଗର ଗୁପ୍ତ କୋଠରି ଭିତରେ ଲୁଚିରହିବା । ଏ ଗୁଣ୍ଡାଙ୍କୁ କ'ଣ ସେ କୋଠରି କଥା ମାଲୁମ ଥିବ ?''

ଝିଅର ବୁଦ୍ଧିକୁ ଖୁବ୍ ତାରିଫ୍‌ଟାଏ କଲା ରାଇଫନ୍ । ବାପ ଝିଅ ଉଭୟେ ଯାଇ ଗୁପ୍ତ କୋଠରି ଭିତରେ ଲୁଚିଗଲେ । ତାର ଅଳ୍ପ କ୍ଷଣ ମଧ୍ୟରେ ଦୁର୍ଗର ସଦର ଫାଟକଟା ମଡ୍‌ମଡ୍ ହୋଇ ଭାଙ୍ଗିପଡ଼ିଲା ଏବଂ ଦୁର୍ଗ ଭିତରକୁ ଜଳସ୍ରୋତ ପରି ମାଡ଼ିଆସିଲା ଜନସ୍ରୋତ । ସିଧା ସିଧା ସେମାନେ ଉପରତାଲାକୁ ଉଠିଗଲେ । ମିନାଟ୍ ଦୁଇଟା ଭିତରେ କର୍ଣ୍ଣେଲ୍‌ସ୍ୱିପ୍ ଓ-ଡ଼ାଇଟ୍ ବନ୍ଦୀ ହୋଇ ରହିଥିବା କୋଠରିରେ ପହଞ୍ଚିଗଲେ ।

ଶୂନ୍ୟ କୋଠରି ଦେଖି ଜନତା ଅବାକ୍ ହୋଇଗଲା; କିନ୍ତୁ ପର ମୁହୂର୍ତ୍ତରେ ଲୋକେ ଗର୍ଜନକରି ଉଠିଲେ, "ଆରେ, ଆରେ, ବେଇମାନ୍ ଦୁଇଟା ଖସିପଳେଇଛନ୍ତି ! ଦେଖ ଦେଖ, ଗଲେ କୁଆଡ଼େ !! ଧର, ଧର, ଧର, ଓ-ଡ଼ାଇଟ୍ ଖସିପଳାଇଲା !! ଧର ।''

ଓଃ, ସେ କି ପ୍ରଚଣ୍ଡ ବିକ୍ଷୋଭ ! ସେମାନଙ୍କର କ୍ରୁଦ୍ଧ ଗର୍ଜନରେ ଆକାଶଟା ଯେପରି ଫାଟିପଡ଼ିବ । ବିକ୍ଷୁବ୍‌ଧ ଜନତାର ଅଳ୍ପ କିଛି ଦୂରରେ ଗୋଟାଏ ବଡ଼ ଘରର ବାରଣ୍ଡାରେ ଅଧା ଲୁଚି ରହି ଦୁଇଜଣ ଲୋକ କଥାଭାଷା ହେଉଥିଲେ; ଦୁଇଜଣଙ୍କ ମଧ୍ୟରୁ ଜଣେ ନବୀନ ଯୁବକ, ଅନ୍ୟଜଣକ ମଧ୍ୟବୟସ୍କ ସାମରିକ କର୍ମଚାରୀ । ସାମରିକ କର୍ମଚାରୀଟି ଆଶ୍ୱସ୍ତିର ନିଃଶ୍ୱାସମାରି କହିପକାଇଲେ, "ଯାହାହେଉ, ବିଚରା ଖସିପଳାଇଲା ।'' ଯୁବକଟି କହିଲା, "ଏଠୁ, ଖସିଯିବାରେ କଣ ଅଛି; ନଗରରୁ ଖସିଗଲେ ଖସିଗଲା ପରି ।''

"କାହିଁକି ମହାରାଜ ?''

"ନଗରର ଦ୍ୱାରଗୁଡ଼ିକ ବନ୍ଦ ଥାଇପାରେ ।''

‘‘ଦିନବେଳେ ଦ୍ୱାର ବନ୍ଦହୁଏନି ।’’



‘‘ହୁଏନି, କିନ୍ତୁ ଆଜି ହୋଇଥାଇପାରେ ।’’

ସେତେବେଳକୁ ଡି-ଗ୍ରିଇଟ୍‌ଙ୍କ ଗାଡ଼ି ଯାଇ ନଗରର ପ୍ରଥମ ତୋରଣ ଟେଲ୍‌ହେଗ୍‌ଠାରେ ପହଞ୍ଚିଯାଇଥିଲା । ଗାଡ଼ି ହଠାତ୍ ଅଟକିଯିବା ଦେଖି ଜନ୍ ବିଚଳିତ ହୋଇ ପଚାରିଲେ, “କଚୁଆନ୍, କାହିଁକି ବନ୍ଦ କଲ ?’’

‘‘ଦ୍ୱାର ବନ୍ଦ, ମାଲିକ ।’’

‘‘ଏଁ, ଦିନବେଳେ ଦ୍ୱାର ବନ୍ଦ !’’ କହି ଜନ୍ ଗାଡ଼ିର କବାଟ ଖୋଲି ବାହାରକୁ ଚାହିଁଲେ । ପ୍ରକୃତରେ ଦ୍ୱାର ବନ୍ଦ ଥିବା ଦେଖି ସେ ଜଣେ ଦ୍ୱାର ରକ୍ଷୀକୁ ଡାକି କହିଲେ, ‘‘ଦ୍ୱାରଟା ଖୋଲିଦିଅ, ଭାଇ !’’

‘‘ଚାବି ଥିଲେ ତ ଦ୍ୱାର ଖୋଲିବି, ଆଜ୍ଞା ! ଚାବି ପରା ନେଇ-ଯାଇଛନ୍ତି ।’’

‘‘କିଏ ସେ ନେଇଯାଇଛନ୍ତି ?’’

‘‘କିଏ ସେ ଆଉ କ’ଣ ? ଯେଉଁମାନେ ନେଇଯାଇ ପାରିବେ ।’’

ଜନ୍ ନିରୁପାୟ ହୋଇ ନଗରର ଅନ୍ୟ ଦ୍ୱାରକୁ ଗାଡ଼ି ଚଳାଇବାକୁ ଆଦେଶ ଦେଲେ । ଟେଲ୍‌ହେଫ୍ ତୋରଣର ଦ୍ୱାରଟା ଯଦି ଖୋଲିଥାଆନ୍ତା ତେବେ ସେଠାରୁ ପାଞ୍ଚମିନଟ୍ ଦୂରରେ ସମୁଦ୍ର । ସେହି ପାଖରେ ଜେଟି ସେଇଁଠି ତାଙ୍କର ଜାହାଜ ଅପେକ୍ଷା କରିଛି । କୌଣସି ବିପଦ ଆସିବା ପୂର୍ବରୁ ସେ ହଲଣ୍ଡ ଉପକୂଳ ଛାଡ଼ି ଚାଲିଯାଇଥାନ୍ତେ; କିନ୍ତୁ ତାହା ହୋଇପାରିଲିନାହିଁ ।

କିଛି ସମୟ ପରେ ଗାଡ଼ି ଆସି ଦ୍ୱିତୀୟ ତୋରଣ ପାଖରେ ଅଟକିଲା; କିନ୍ତୁ ସେ ଦ୍ୱାର ବି ବନ୍ଦ । ଦିଗ୍ଭ୍ରାନ୍ତ ହୋଇ ଗାଡ଼ି ଚାଲିଲା ଅନ୍ୟ ଏକ ତୋରଣ ଆଡ଼କୁ ଏବଂ ସେହିଭଳି ଭାବରେ ତୋରଣ ତୋରଣ ହୋଇ ବୁଲି ବୁଲି ଗାଡ଼ି ଆସି ବିକ୍ଷୁବ୍ଧ ଜନତାର ଘେର ଭିତରେ ପଶିଗଲା । ଗୁଣ୍ଡାଦଳଙ୍କର କ୍ରୂର ଅଟ୍ଟହାସ୍ୟ ଭିତରେ କେତେ ଜଣ ଲୋକ ଦୁଇ ଭାଇଙ୍କୁ ଗାଡ଼ି ଭିତରୁ ଟାଣିଆଣିଲେ । ହାହାକାର ଭିତରେ କାହାର ଗୋଟାଏ ଉନ୍ନତ ଲୁହାଛଡ଼ ଆସି କର୍ଣ୍ଣେଲିୟସ୍ ଡ-ଉଇଟଙ୍କ ମୁଣ୍ଡରୁ ଫାଳେ ଉଡ଼ାଇ ନେଲା । ଏକ ଦାନବୀୟ ଉଲ୍ଲାସରେ ରାଜପଥ ପ୍ରକମ୍ପିତ ହୋଇଉଠିଲା । ଗୁହୁଁ ଗୁହୁଁ ଦୁଇ ଭାଇଙ୍କର ରକ୍ତାକ୍ତ ମୃତଦେହ ରାଜପଥ ଉପରେ ଲୋଟି ପଡ଼ିଲା । ପିଶାଚ-ଗୁଡ଼ାକ ଟିକି ଟିକି କରି କାଟିପକାଇଲେ ଦୁଇଭାଇଙ୍କୁ । ଶେଷକୁ କଙ୍କାଳ ଦୁଇଟାକୁ ଟାଣିନେଇ ଚାଲିଗଲେ ଦୁର୍ଗ ସମ୍ମୁଖରେ ଥିବା ଫାଶିକାଠରେ ଝୁଲାଇଦେବାଲାଗି—ତଳକୁ ମୁଣ୍ଡ ଓ ଉପରକୁ ଗୋଡ଼ କରି ଝୁଲାଇଦେଲେ ହିଁ ପୈଶାଚିକ ଆନନ୍ଦର ସୀମା ପୂର୍ଣ୍ଣ କରିବେ ସେମାନେ ।

ସେଦିନ ସକାଳବେଳକୁ ଦେଖାଗଲା ରାଜା ଉଇଲିୟମ୍ ଟେଲହେଫ୍ ତୋରଣର ଦ୍ୱାରରକ୍ଷକକୁ ଦ୍ୱାରର ଚାବିଟା ଫେରାଇଦେଉଛନ୍ତି ।

## ତିନି

ରାଜଧାନୀ ହେଗ୍‌ଠାରେ କୁଟିଳ ରାଜନୀତି ଭିତରେ ଗଣତନ୍ତ୍ରର ପ୍ରହସନ ଚାଲିଥିବାବେଳେ, ଡର୍ଟ୍‌ଠାରେ ଟ୍ୟୁଲପ୍‌ରସିକ ଭ୍ୟାନ୍ ବାର୍ଲି ଓ ବକ୍‌ସଟେଲ କଣ କରୁଥିବେ ଦେଖାଯାଉ ।

ବିଚରା ଭ୍ୟାନ୍ ବାର୍ଲି ଜଗତର ସବୁକିଛି ଭୁଲି ଟ୍ୟୁଲିପ୍‌ର କଳ୍ପନା-ମଧୁର ରାଜ୍ୟରେ ଆତ୍ମହରା ହୋଇ କଳା ଟ୍ୟୁଲିପ୍ ସୃଷ୍ଟିକରିବା ସାଧନାରେ ବୁଡ଼ିରହିଥିଲେ । ରାଜଧାନୀ ହେଗ୍‌ଠାରେ ଯେଉଁ ବିରାଟ ରାଜନୈତିକ ଓଲଟପାଲଟ ହୋଇଗଲା, ବାର୍ଲିଙ୍କୁ ତାର ବିନ୍ଦୁବିସର୍ଗ ବି ଜଣାନାହିଁ । କିନ୍ତୁ ବକ୍‌ସଟେଲ ଭିନ୍ନପ୍ରକୃତିର । ଟ୍ୟୁଲିପ୍ ଚାଷ କରୁଛି ବୋଲି ରାଜନୀତିର ଖବର ଛାଡ଼ିଦେବ, ସେ କି କଥା ! ହଲାଣ୍ଡ ଦେଶରେ ଯେଉଁ ରାଜନୈତିକ ପଟପରିବର୍ତ୍ତନ ଘଟିବାକୁ ଯାଉଥିଲା, ତାର ସୂଚନା ସେ ବହୁପୂର୍ବରୁ ପାଇଥିଲା । ତେଣୁ ସେ ବରାବର ଗୋଟାଏ କାନ ଓ ଗୋଟାଏ ଆଖି ହେଗ୍ ଆଡ଼େ ରଖିଥିଲା । ସେ ଅନୁମାନ କରିନେଇଥିଲା—ଡିଉଟ୍ ଦୁଇ ଭାଇଙ୍କର ପତନ ଅବଶ୍ୟମ୍ଭାବୀ; କିନ୍ତୁ ଏସବୁ ଅନୁମାନ କରି ନିଶ୍ଚିନ୍ତ ହୋଇ ସେ ବସି ନଥିଲା । ସେ ଗମ୍ଭୀରଭାବେ ଚିନ୍ତାକରିଚାଲିଥିଲା—କର୍ଣ୍ଣେଲିୟସ୍ ଡି-ଭିଟଙ୍କର ଯଦି ପତନ ଘଟିବ, ତେବେ ତାଙ୍କର ସଙ୍ଗରେ ଭ୍ୟାନ୍ ବାର୍ଲିର ପତନ କ'ଣ ଘଟାଯାଇନପାରେ ? ଜଣେ ଧର୍ମପିତା, ଆଉଜଣକ ଧର୍ମପୁତ୍ର । ଦୁଇଜଣଙ୍କ ମଧ୍ୟରେ ନିବିଡ଼ ସ୍ନେହସମ୍ପର୍କ, ଦୁଇଜଣଙ୍କୁ ଏକସଙ୍ଗରେ ଗୁଣ୍ଡି ଦେବା ଲାଗି କ'ଣ ସୂତା ମିଳିବନାହିଁ ?

ଭାବୁ ଭାବୁ ବକ୍‌ସଟେଲ୍‌ର ଆଖିଆଗରେ ବିଜୁଳି ପରି ଗୋଟାଏ କଥା ଝଲସି ଉଠିଲା । ତା'ର ଆଖିଆଗରେ ଗୋଟାଏ ଘଟଣା ଘଟିଯାଇଥିଲା । କର୍ଣ୍ଣେଲିୟସ ଡି-ଭିଟ୍ ଅତି ଗୋପନ ଭାବରେ ତାଡ଼ାଏ କାଗଜ ଭ୍ୟାନ୍ ବାର୍ଲି ପାଖରେ ରଖିଦେଇ ଯାଇଥିଲେ । ସେତେବେଳେ ହିଁ ବକ୍‌ସଟେଲ ସନ୍ଦେହ କରିଥିଲା—ନିଶ୍ଚୟ ରାଜନୀତି ସମ୍ପର୍କୀୟ କିଛି କାଗଜପତ୍ର ହେବ । ସେତେବେଳେ ଅବଶ୍ୟ କ୍ଷେତ୍ର ପ୍ରସ୍ତୁତ ହୋଇନଥିଲା ; କିନ୍ତୁ ବର୍ତ୍ତମାନ ? ଡି-ଭିଟଙ୍କ ନାମ ସହିତ ଭ୍ୟାନ୍ ବାର୍ଲିର ନାମ ଯୋଡ଼ିଦେଲେ ତାଙ୍କୁ କ'ଣ ଅଭିଯୁକ୍ତ କରି ରାଜ-ଅଦାଲତକୁ ଟାଣି ନେଇ ହେବନାହିଁ ?

ହଁ ନିଶ୍ଚୟ ହେବ । ସେଦିନର ଘଟଣା ଟିପି ରଖିଥିବା ଖାତାଟାକୁ ବାହାର କଲା ବକ୍‌ସଟେଲ୍ ଏବଂ କାଳବିଳମ୍ବ ନକରି ଲେଖିବସିଲା ଗୋଟାଏ ବେନାମୀ ଚିଠି—ରୀତିମତ ଏକ ଅଭିଯୋଗପତ୍ର । କାଗଜଗୁଡ଼ିକ କେଉଁ

କୋଠରୀରେ କେଉଁ ଆଲମିରାରେ କେଉଁ ଥାକରେ ଅଛି, ତାହା ବି ଲେଖିଦେଲା । ଏତେ ଠିକଣାଠି ଖବର ପାଇବାପରେ ସରକାର କ'ଣ ଏହାକୁ ଅବିଶ୍ୱାସ କରିବେ ?

ଅନ୍ତତଃ ସତ୍ୟାସତ୍ୟ ଜାଣିବାଲାଗି ତଦାରଖ୍‌ଟା ନିଶ୍ଚୟ କରିବେ । କାଗଜତାଡ଼ାଟା ନିଶ୍ଚୟ ଧରାପଡ଼ିବ ଏବଂ ବକ୍‌ସଟେଲର ସନ୍ଦେହ ଯଦି ଠିକ୍ ହୋଇଥାଏ, ତେବେ ଭ୍ୟାନ୍‌ବାର୍ଲିର ଧ୍ୱଂସ ଅନିବାର୍ଯ୍ୟ ।

ପ୍ରତିଯୋଗୀର ଧ୍ୱଂସହେଲେ ବକ୍‌ସଟେଲର ଲାଭହେବ ଅନେକ । ସେ ଅଭାବଗ୍ରସ୍ତ ହୋଇଥିବାରୁ ଟ୍ୟୁଲିପ୍ ଗବେଷଣାରେ ଭ୍ୟାନ୍ ବାର୍ଲି ପରି ଅଗ୍ରଗତି କରିପାରିନାହିଁ । ଭ୍ୟାନ୍ ବାର୍ଲି ଯେଉଁ ସ୍ତରରେ ପହଞ୍ଚିଛି, ତାହା କିଛି କମ୍ ନୁହେଁ । ସେ ଗାଢ଼ ବାଦାମି ରଙ୍ଗର ଟ୍ୟୁଲିପ୍ ସୃଷ୍ଟି କରିପାରିଛି ଏବଂ ଯେତେଦୂର ସମ୍ଭବ ଔଷଧପତ୍ର ପ୍ରୟୋଗ କରି ସେଥିରୁ ଗାଢ଼କଳା ରଙ୍ଗର ଟ୍ୟୁଲିପ୍ ଫୁଟାଇବା ଲାଗି ପ୍ରସ୍ତୁତ ହୋଇସାରିଛି । ଯଦି ତାକୁ ଏହି ଅବସ୍ଥାରେ ବ୍ୟାଘାତ କରାଯାଏ, ଅଦାଲତକୁ ଟାଣିନିଆଯାଏ, ତେବେ ତା ଘରେ ପଶି ସେହି ନୂଆ କନ୍ଦାଗୁଡ଼ିକ ଚୋରି କରି ଆଣିହେବ । ତାରି ଉପରେ ପରୀକ୍ଷାକରି ଶେଷକୁ ବକ୍‌ସଟେଲ୍ ହିଁ କଳା ଟ୍ୟୁଲିପ୍‌ର ସ୍ରଷ୍ଟା ହୋଇପାରିବ । ସେ ଲାଭ କରିବ ଏକଲକ୍ଷ ସୁନାମୋହରର ପୁରସ୍କାର ।

ଭାବୁ ଭାବୁ ବକ୍‌ସ୍‌ଟେଲ୍‌ର ମୁଣ୍ଡ ଗରମ ହୋଇଗଲା । ଆଉ ବିଳମ୍ବ ନକରି ଯାଇ ବେନାମୀ ଚିଠିଟା ଡାକରେ ପକାଇ ଦେଇ ଆସିଲା । ଏହା ହେଲା ଅଗଷ୍ଟ ୨୦ ତାରିଖର କିଛି ଦିନ ପୂର୍ବର ଘଟଣା ।

ଅଗଷ୍ଟ ୨୦ର ଉପରବେଳା । ଉପରତାଲାର ଗବେଷଣା ଘରେ ବସି କର୍ଣ୍ଣେଲିୟସ୍ ଭ୍ୟାନ୍‌ବାର୍ଲି ତାଙ୍କର କଳା ଟ୍ୟୁଲିପ୍ ପୁଆଗୁଡ଼ିକୁ ସ୍ନେହରେ ଚାହିଁରହିଛନ୍ତି । ସେଗୁଡ଼ିକୁ ମାଟିରେ ପୋତିବା ଲାଗି ଏ ପର୍ଯ୍ୟନ୍ତ ଉପଯୁକ୍ତ ସମୟ ଆସିନାହିଁ । ଉପଯୁକ୍ତ ସମୟ ଆସିବାମାତ୍ରେ ସେ ଆବଶ୍ୟକୀୟ ସାର ଦେଇ ପୁଆ ପୋତିଦେଇ ସତର୍କ ପ୍ରହରୀ ଜଗାଇଦେବେ । ତା ପରେ··· କି ଗୌରବ ! ଲକ୍ଷେ ସୁନାମୋହରର ପୁରସ୍କାରଟା ବଡ଼ କଥା ନୁହେଁ । ପୁରସ୍କାର ପାଇବାମାତ୍ରେ ସେଥିରୁ ଅଧେ ସେ ଡର୍ଟ୍‌ର ଗରିବ ଲୋକଙ୍କ

ଭିତରେ ବାଣ୍ଟିଦେବ । ପ୍ରଧାନ କଥା ହେଲା, ପୃଥିବୀର ଫୁଲଗୃହ ଇତିହାସରେ କର୍ଣ୍ଣେଲସ୍ଫସ୍ ଭ୍ୟାନ୍ ବାର୍ଲିଙ୍ଗ ନାମ ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିଯିବ ! ହାତରେ ତିନୋଟି କଳା ଟ୍ୟୁଲିପ୍ ପୁଅ ଧରି ଏହିପରି ଏକ ସୁନେଲି ସ୍ୱପ୍ନରେ ସେ ବିଭୋର । ଏତିକିବେଳେ କିଏସେ ଧପ୍‌ଧାପ୍ ହୋଇ ଶିଡ଼ି ଚଢ଼ି ଉପରକୁ ଉଠିଲା । ବ୍ୟସ୍ତହୋଇ ଧାଇଁ ସୁ୍ୟ ପାଟିକରି ଉଠିଲେ, "ଉପରକୁ ଯାଅନ୍ତୁ, ଉପରକୁ ଯାଅନ୍ତୁ ; ମାଲିକ ମନାକରିଛନ୍ତି ।"

"ମନା କଲେ ଚଳିବ ? ଏଇଟା ଯେ ଜୀବନମରଣ ସମସ୍ୟା ।" କହି ଲୋକଟା ସ୍ୟୁକୁ ଠେଲି ଉପରକୁ ଉଠିଆସିଲା ।

ଲୋକଟା କିଏସେ ତାହା ନଦେଖି କର୍ଣ୍ଣେଲିସ୍ଫସ୍ ଭୀଷଣ ରାଗିଉଠିଲେ । ତପସ୍ୱୀର ତପ ଭଙ୍ଗ ହେଲେ ଯେପରି ହେବ, କର୍ଣ୍ଣେଲିସ୍ଫସ୍ ସେପରି କ୍ରୁଦ୍ଧ ହୋଇ କହିବାବେଳକୁ ଲୋକଟା ଆସି ପହଞ୍ଚିଗଲା । କର୍ଣ୍ଣେଲିସ୍ଫସ୍ ଉପରକୁ କ୍ଷେପିଗଲେ ଏବଂ ଦୁର୍ଯୋଗରୁ ସେତିକିବେଳେ ତାଙ୍କ ହାତରୁ ଟ୍ୟୁଲିପ୍ ପୁଅ ତିନୋଟି ଖସିପଡ଼ି ଏଣେତେଣେ ଛିଟିକିଗଲା ।

ହାୟ ! ହାୟ ! ···କେହି ଯେହି ଲୋକଟାକୁ ନଗ୍ରହୁଣୁ ଆଣ୍ଠୁମାଡ଼ି ତଳେ ବସିପଡ଼ି ସୋଫାତଳେ, ମେଜତଳେ ଟ୍ୟୁଲିପ ପୁଅ ଦରାଣ୍ଡିବାକୁ ଲାଗିଲେ । ଗୋଟାଏ ପୁଅ ହାତରେ ପଡ଼ିଗଲା—ଆଉ ଦୁଇଟା ? ଆସିଥିବା ଲୋକଟି ତାର ନିଜର ବ୍ୟସ୍ତତା ଦେଖାଇ ପକେଟରୁ ଖଣ୍ଡେ କାଗଜ ବାହାର କରି ବାର୍ଲିଙ୍ଗର ମୁହଁ ପାଖରେ ଧରି କହିଉଠିଲା, "ଏଟାକୁ ଆଗ ପଢ଼ନ୍ତୁ, ପଢ଼ନ୍ତୁ ଆଜ୍ଞା !"

"ଆହା-ହା, ମାଡ଼ିଦେଲ ମାଡ଼ିଦେଲ ପୁଅଟା ? ହଁ, ଆଉ ଗୋଟାଏ ମିଳିଗଲା···"

"ଶୀଘ୍ର ପଢ଼ନ୍ତୁ ଆଜ୍ଞା !"

"କାହିଁକି ? କାହିଁକି ଏତେ ବ୍ୟସ୍ତ ? କିଏସେ ତୁମେ ଶୁଣେ ?"

"ମୁଁ ଆଜ୍ଞା କ୍ରେଇକ୍ । ଚିଠିଟିକୁ ଶୀଘ୍ର ପଢ଼ିନିଅନ୍ତୁ ।"

"ହଁ ହଁ ପଢ଼ିବି—ତୁମେ ଏଠୁ ଗଲ ଆଗ ।—ଯାଉଛ ନା ନାହିଁ ?"

କ୍ରେଇକ୍ ଯେ କିଏ ଏ ବ୍ୟସ୍ତତା ଭିତରେ କର୍ଣ୍ଣେଲିସ୍ଫସ୍‌ଙ୍କର ମନେ

ବି ପଡ଼ୁନାହିଁ । ତୃତୀୟ ପୁଅଟି ଦେଖି ସେ କହିଲେ, "ହେଉଛି ତୃତୀୟ ପୁଅଟା ମିଳିଗଲା । ଓଃ, ଡେକ୍‌ସ ସନ୍ଧରେ ଯାଇ ପଶିବ !''

ତେଣେ ହେଇକ୍ ଆଉ ଅପେକ୍ଷା କରିପାରିଲା ନାହିଁ । ଗୋଟାଏ ସେକେଣ୍ଡ ଯେ ତା ପକ୍ଷରେ ବର୍ତ୍ତମାନ କେତେ ମୂଲ୍ୟବାନ୍, ତାହା ସେ ଭଲଭାବରେ ଜାଣେ । ସେଦିନ ହେଗ୍‌ରେ ହିଂସ୍ର ଜନତାର ରୁଦ୍ରରୂପ ସେ ଦେଖିଛି । ସେ ଯଦି ଧରାପଡ଼େ ତେବେ ଜନ ଡି-ଉଇଟ୍‌ଙ୍କର ଚାକର ହୋଇଥିବାରୁ ତା ଅବସ୍ଥା କଣ ହେବ ସେ ଅନୁମାନ କରିପାରିଥିଲା । ମାଲିକଙ୍କର ଆଦେଶ ରକ୍ଷାକରି ସେ ଜରୁରୀ ଚିଠିଟି ଆଣି କର୍ଣ୍ଣେଲିୟସ୍‌ଙ୍କ ପାଖରେ ପହଞ୍ଚାଇ ଦେଇଛି; ଯଥାଶୀଘ୍ର ଚିଠିଟି ପଢ଼ିବା ଲାଗି ମଧ୍ୟ ସେ ଅନୁରୋଧ କରିସାରିଛି—ସେତିକି ଯଥେଷ୍ଟ । ଏଥର ନିଜର ପ୍ରାଣ ବଞ୍ଚାଇବାକୁ ପଡ଼ିବ ଭାବି ସେ ଚାଲିଗଲା ।

କିନ୍ତୁ ହେଇକ ଚାଲିଯିବା ପରେ ପରେ ପୁଣି କାହାର ଆସିବା ଶବ୍ଦ ଶୁଣିଲା । ଜଣେ ନୁହେଁ ତ କେତେ ଜଣ ଲୋକ । କର୍ଣ୍ଣେଲିୟସ୍ ଚଞ୍ଚଳ ଉଠିଲେ । ଆଚ୍ଛା ଅରାଜକତା ଏ ଦେଶରେ ବ୍ୟାପିଛି । ମଣିଷ ନିଜ ଘରେ ବି ଶାନ୍ତିରେ ବସିପାରିବ ନାହିଁ । ପୁଅ ତିନୋଟି ହାତରେ ଧରି ବାର୍ଲି ବିରକ୍ତ ହୋଇ ସେଆଡ଼େ ଚାହିଁଲେ । ସେତିକିବେଳେ ସ୍ୟାର ଚିତ୍କାର ଶୁଭିଲା । ତଳ କବାଟଟାକୁ ଧଡ଼ ଧଡ଼ କରି ଖୋଲିଦେଇ କେତେ ଜଣ ଉପରକୁ ମାଡ଼ିଆସୁଛନ୍ତି ଦେଖି ଭ୍ୟାନ ବାର୍ଲି ଚଟ୍ କରି ପୁଅ ତିନୋଟିକୁ ଟେବୁଲ ଉପରେ ରଖାଯାଇଥିବା ଖଣ୍ଡେ କାଗଜରେ ଗୁଡ଼ାଇଦେଇ ପକେଟରେ ପୂରାଇଦେଲେ । ଏସବୁ ଏକାନ୍ତ ଗୋପନୀୟ ବସ୍ତୁ; ବାହାର ଲୋକଙ୍କର ଦୃଷ୍ଟିରୁ ଦୂରେଇ ରଖିବା ଉଚିତ; କିନ୍ତୁ, କିନ୍ତୁ ସେ କାଗଜଖଣ୍ଡିକ ଯେ ହେଇକ ଆଣିଥିବା ଚିଠି, ସେକଥା ଆଉ କର୍ଣ୍ଣେଲିୟସଙ୍କର ମନେନାହିଁ । ଏତିକିବେଳେ ଜଣେ ଚାକର ଦୌଡ଼ି ଆସି ତାଙ୍କୁ କହିଲା, "ମାଲିକ, ଆପଣ ଝରକା ଡେଇଁ ପଳାନ୍ତୁ ।"

"କଣ କହିଲୁ ?''

"ପଳାନ୍ତୁ ଆଜ୍ଞା, ଗୁଡ଼ାଏ ସୈନ୍ୟ କାହିଁକି ଆମ ଘର ଭିତରକୁ ମାଡ଼ିଆସୁଛନ୍ତି ।"

"ଆଃ ରଖ ।"

କିନ୍ତୁ ସତକୁ ସତ ଦଳେ ସୈନ୍ୟ ଗବେଷଣା ଘରେ ପଶିଗଲେ । ସେମାନଙ୍କ ସହିତ ଜଣେ ମାଜିଷ୍ଟ୍ରେଟ ବି ଆସିଥାନ୍ତି । କର୍ଣ୍ଣେଲିୟସ ଦେଖିଲେ ମାଜିଷ୍ଟ୍ରେଟ୍ ଜଣକ ତାଙ୍କର ଚିହ୍ନା । ନାମ ତାଙ୍କର ଭ୍ୟାନ ଷ୍ଟେନ୍ । ଏତେ ଚିହ୍ନା ସତ୍ତ୍ୱେ ମାଜିଷ୍ଟ୍ରେଟ୍ ଜଣକ ସରକାରୀ କାଇଦାରେ ତାଙ୍କୁ ପଚାରିଲେ—"ଆପଣଙ୍କ ନାମ ଡାକ୍ତର କର୍ଣ୍ଣେଲିୟସ ଭ୍ୟାନ ବାର୍ଲି ?"

ନମସ୍କାର କରି କର୍ଣ୍ଣେଲିୟସ କହିଲେ, "ମୁଁ ହିଁ ସେହି ଲୋକ; ତେବେ ଆପଣ ତ ମୋ ନାମ ଜାଣନ୍ତି ।"

"ଆପଣ ହିଁ ଯଦି ହୋଇଥାନ୍ତି, ତେବେ ଆପଣଙ୍କ ପାଖରେ ରାଜଦ୍ରୋହମୂଳକ ଯାହାସବୁ କାଗଜପତ୍ର ଅଛି, ସେଗୁଡ଼ାକ ମତେ ଦେଇ-ଦିଅନ୍ତୁ ।"

"ରାଜଦ୍ରୋହମୂଳକ କାଗଜ ?" ହତବୁଦ୍ଧି ହୋଇ କର୍ଣ୍ଣେଲିୟସ୍ ପଚାରିଲେ ।

"ଦୟା କରି କିଛି ନଜାଣିବା ପରି ଛଳନା କରନ୍ତୁ ନାହିଁ ।"

"ମାଜିଷ୍ଟ୍ରେଟ ସାହେବ, ମୁଁ ଶପଥ କରି କହୁଛି, ଆପଣ କି କାଗଜ ମାଗୁଛନ୍ତି ମୁଁ କିଛି ବୁଝିପାରୁନାହିଁ ।"

"ମୁଁ ତା'ହେଲେ ବୁଝାଇଦେଉଛି । ରାଜଦ୍ରୋହୀ କର୍ଣ୍ଣେଲିୟସ୍ ଡ଼ି-ଉଇଟ୍ କିଛି ଦିନ ତଳେ ଆପଣଙ୍କ ପାଖରେ ଯେଉଁ କାଗଜତାଡ଼ାଟି ଲୁଚାଇଦେଇ ଯାଇଥିଲା ସେହି କାଗଜତାଡ଼ାଟା ଦିଅନ୍ତୁ ।"

ଏଥର ଯୁବକ କର୍ଣ୍ଣେଲିୟସ୍‌ଙ୍କର ସ୍ମରଣ ହେଲା । ମାଜିଷ୍ଟ୍ରେଟ୍ କହିଲେ, "କ'ଣ ମନେପଡ଼ୁଛି ?"

"ହଁ, ମନେପଡ଼ୁଛି; କିନ୍ତୁ ସେ ସବୁ ତ ରାଜଦ୍ରୋହମୂଳକ କାଗଜ ହୋଇନଥିବ ।"

"ଆପଣ ତାହେଲେ ଅସ୍ୱୀକାର କରୁଛନ୍ତି ?"

"ନିଶ୍ଚୟ ।"

"ଠିକ୍ ଅଛୁ ! ଆପଣଙ୍କର ଟ୍ୟୁଲପ୍ କନ୍ଦା ରଖିବା କୋଠରି କେଉଁଠି ?"

"ଏଇ କୋଠରି, ଯେଉଁଠି ଆପଣ ବସିଛନ୍ତି ।"

ମାଜିଷ୍ଟ୍ରେଟ୍ ନିଜ ଫାଇଲ୍‌ରୁ ଗୋଟାଏ କାଗଜ ଝୋଲି କରି ପଢ଼ିଲେ ଏବଂ ତା'ପରେ ରୁକ୍ଷସ୍ୱରରେ ପଚାରିଲେ, "ତାହାହେଲେ ଆପଣ ସେ କାଗଜଗୁଡ଼ାକ ଦେବେନାହିଁ ?"

"ସେ ସବୁ ତ ମୋର ନୁହେଁ, ପରର । ମୋ ପାଖରେ ରଖିଦେଇ ଯାଇଛନ୍ତି—କିପରି ଦେବି କହନ୍ତୁ ?"

"ସରକାରୀ କ୍ଷମତାବଳରେ ମୁଁ ଆପଣଙ୍କୁ କହୁଛି, ଦେଇଦିଅନ୍ତୁ ! ଏହି ଆଲମାରିର ତୃତୀୟ ଥାକରେ ସେ କାଗଜ ସବୁ ରହିଛି ।"

କର୍ଣ୍ଣେଲିୟସ୍ ଦେଖିଲେ ମାଜିଷ୍ଟ୍ରେଟ୍ ଠିକ୍ ଖବର ରଖିଛନ୍ତି । ତଥାପି କାଗଜ ଦେବାଲାଗି ତାଙ୍କ ହାତ ଗଲାନାହିଁ । ମାଜିଷ୍ଟ୍ରେଟ୍ ଆଉ ଅପେକ୍ଷା ନକରି ଆଲମାରିଟା ଖୋଲିଦେଇ କହିଲେ, "ତାହାହେଲେ ମତେ ନିଜେ ବାହାର କରିବାକୁ ପଡ଼ିବ ।" ସେ ଦେଖିଲେ ତୃତୀୟ ଥାକରୁ କୋଡ଼ିଏ ପଚାଶଟା ଖଣ୍ଡେ କନ୍ଦା ବାହାରିଲା । ପ୍ରତିକନ୍ଦାରେ ତାର ନାମ ଓ ଲଗାଯିବା ତାରିଖ ଆଦି ଗୋଟିଏ ଗୋଟିଏ ଟିକଟଲାଗିଛି । କନ୍ଦାଗୁଡ଼ିକ ତଳେ ରହିଥିଲା ତାଡ଼ାଏ କାଗଜ । ଡ-ଉଇଟ୍ ଯେଉଁଠାରେ କାଗଜତକ ରଖିଦେଇଥିଲେ, ସେ ସବୁ ସେଇଠି ଥିଲା । ମାଜିଷ୍ଟ୍ରେଟ୍ କାଗଜତାଡ଼ା ଉପରେ ଥିବା ସିଲ୍‌ମୋହର ଭାଙ୍ଗି କାଗଜ ଖୋଲୁ ଖୋଲୁ ସେଗୁଡ଼ାକ ସେ କି କାଗଜ ତାହା ବୁଝିଗଲେ । ସେ କହିଉଠିଲେ, "ଆମେ ତାହାହେଲେ ଠିକ୍ ଖବର ପାଇଥିଲୁ ।"

"ଠିକ୍ ଖବର ମାନେ ?"

"ଆଉ ଛଳନା କରନାହିଁ, ମୋ ସହିତ ଆସ !"

"ଆପଣଙ୍କ ସହିତ ?"

"ହଁ-ହଁ, ମୋ ସହିତ । ରାଷ୍ଟ୍ର ନାମରେ ମୁଁ ତୁମକୁ ଗିରଫ କରୁଛି ।"

"ଗିରଫ ! କି ଦୋଷ ମୁଁ କରିଛି ?" କର୍ଣ୍ଣେଲିୟସ୍ ଚମକି ପଡ଼ିଲେ ।

"ମୁଁ ସେ କଥା କହିପାରିବ ନାହିଁ । ଯାହା ଶୁଣିବାର ଅଦାଲତରେ ଶୁଣିବ । କହିବାର କିଛି ଥିଲେ ସେଇଠି କହିବ ।"

"କେଉଁଠି ? କେଉଁ ଅଦାଲତରେ ?"

"ରାଜଧାନୀ ହେଗ୍‌ର ଅଦାଲତରେ ।"

ଅବସ୍ଥା ଦେଖି ଧାଇ ରୁଃ ମୂର୍ଚ୍ଛା ହୋଇଗଲେ । ଚାକରମାନେ ଲୁହ ଗଡ଼ାଇଲେ । ସମସ୍ତଙ୍କ ପଛରେ ପକେଇଦେଇ ମାଜିଷ୍ଟ୍ରେଟ୍ ଭ୍ୟାନ୍ ଷ୍ଟେନ୍ ରାଜବନ୍ଦୀ ଭ୍ୟାନ୍ ବାର୍ଲିଙ୍କୁ ନେଇ ଗାଡ଼ିରେ ବସାଇଦେଲେ ।

ଅବିଳମ୍ବେ ଗାଡ଼ି ଚାଲିଗଲା ହେଗ୍ ପଥରେ ।

କ'ଣ ହେଉଛି ଦେଖିବା ଲାଗି ବକ୍‌ସଟେଲ ତେଣେ ପାଚିର ଉପରେ ବସି ଚାହିଁରହିଥିଲା । ମନସ୍କାମନା ତା'ହେଲେ ତାର ପୂର୍ଣ୍ଣ ହୋଇଛି ?—ନା, ହେଲା କେତେବେଳେ ? କଳା ଟ୍ୟୁଲିପ୍ କନ୍ଦାଗୁଡ଼ାକ ନିଜ ହାତକୁ ନ ଆସିବା ପର୍ଯ୍ୟନ୍ତ କାମ ଶେଷ ହୋଇନାହିଁ ।

ସେହି ଦିନ ରାତି କଥା । ବାର୍ଲିଙ୍କର ଚାକରବାକର ମାଲିକଙ୍କର ଏ ଦଶା ଦେଖି ଏତେ ବ୍ୟଥିତ ହୋଇପଡ଼ିଲେ ଯେ ସେମାନେ ଟ୍ୟୁଲିପ୍ ବଗିଚା ଜଗିବାକୁ ଭୁଲିଗଲେ । ଯେ ଯେଉଁଠି ବସି କାନ୍ଦୁଥିଲା ସେଇଠି ଗଭୀର ନିଦରେ ଶୋଇପଡ଼ିଲା । ବକ୍‌ସଟେଲ୍‌କୁ ସୁନ୍ଦର ସୁଯୋଗ ମିଳିଗଲା । ସେ ଶିଡ଼ି ପକାଇ ପାଚିର ଉପରକୁ ଉଠିଲା । ରାତି ସେତେବେଳକୁ ବାଆର । ଶିଡ଼ିଟାକୁ ଉଠାଇଆଣି ବାର୍ଲିଙ୍କର ଘରପଟକୁ ଯୋଇଲା ଓ ତାର ସାହାଯ୍ୟରେ ଓହ୍ଲାଇ ଟ୍ୟୁଲିପ୍ ବଗିଚାରେ ପହଞ୍ଚିଲା । କଳା ଟ୍ୟୁଲିପ୍ କନ୍ଦା କେଉଁଠି ଲଗାଯାଇଛି ସେ ଠିକ୍ ଲକ୍ଷ୍ୟ ରଖିଥିଲା । ଅନ୍ଧାର ଭିତରେ ଦଉଣ୍ଡି ଦଉଣ୍ଡି ସେହି ଜାଗାରେ ପହଞ୍ଚି ହାଲୁକା ମାଟିଗୁଡ଼ାକୁ ହାତରେ ଆଡ଼େଇଲା । କିନ୍ତୁ କାହିଁ ? କନ୍ଦାତ ନାହିଁ ! ଭୁଲ ହୋଇଗଲା ବୋଧହୁଏ !

ସେ ପାଖଆଖ ସବୁ ଜାଗା ହାତରେ ଖୋଳିପକାଇଲା; କିନ୍ତୁ କାହିଁ, କୌଣସିଠାରେ ଟ୍ୟୁଲିପ୍ କନ୍ଦା ମିଳିଲାନାହିଁ !! ତା'ହେଲେ ? ଘୁରୁ ଘୁରୁ ମୁଣ୍ଡ ବୁଲିଲା ହୋଇଗଲା ବକ୍‌ସଟେଲର । ସେହି ଦିନ ଦିନବେଳେ ବୋଧହୁଏ କର୍ଣ୍ଣେଲିୟସ୍ କନ୍ଦା ଉଠାଇନେଇଛନ୍ତି ।

ବକ୍‌ସଟେଲ୍ କ୍ରୋଧରେ ଉନ୍ମାଦ ପରି ହୋଇଗଲା । ଶିଢ଼ି ଚଢ଼ି ପାଚେରି ଉପରକୁ ଫେରିଗଲା । ଶିଢ଼ିଟାକୁ ଟେକି ନିଜ ଘର ପଟେ ପକାଇଲା । ଫେରିଆସିଲା ନିଜ ଅଗଣା ଭିତରକୁ । ନିଜ ଅଗଣାରେ ଠିଆ ହେଉ ହେଉ ତା ମୁଣ୍ଡରେ ଆଉ ଗୋଟାଏ ବୁଦ୍ଧି ପଶିଲା—ନା, ହତାଶ ହେବାର କାରଣ ନାହିଁ । ଟ୍ୟୁଲିପ୍ କନ୍ଦା ଯେତେବେଳେ ବଗିଚ୍ଚରେ ନାହିଁ; କର୍ଣ୍ଣେଲ୍ ବାର୍କିର ଉପର ମହଲର ଗବେଷଣା କୋଠରିରେ ଥିବ । ସେହି କୋଠରୀକୁ ଯିବାକୁ ପଡ଼ିବ । ତାର ଝରକାଗୁଡ଼ାକ ସହଜରେ ବାହାର ପଟରୁ ବି ଖୋଲିଯିବ ଉପରକୁ ଉଠିବାକୁ ଯଦି ଗୋଟାଏ ଲମ୍ବା ଶିଢ଼ି ମିଳିଯାଆନ୍ତା, ତେବେ ସବୁ ସମାଧାନ ହୋଇଯାଆନ୍ତା; କିନ୍ତୁ ତା ଘରେ ତ ଏତେ ବଡ଼ ଶିଢ଼ି ନାହିଁ । ମନେପଡ଼ିଗଲା ଦିନବେଳେ ଯାହାର ଗୋଟାଏ ଘର ମରାମତି କରିବାପାଇଁ ରାଜମିସ୍ତ୍ରୀମାନେ ଗୋଟାଏ ଲମ୍ବା ଶିଢ଼ି ଆଣିଥିଲେ । ରାସ୍ତାକଡ଼ରେ ଶିଢ଼ିଟା ଆଉଜା ହୋଇଥିଲା । ବକ୍‌ସଟେଲ୍ ଭଲମନ୍ଦ ବିଚାର ନକରି ଦାଣ୍ଡକୁ ଦଉଡ଼ିଗଲା ।

ଆଃ, ଶିଢ଼ିଟା ସେମିତି ଆଉଜା ହୋଇଛି ! କାଳବିଳମ୍ବ ନକରି ସେ ଲମ୍ବା ଶିଢ଼ିଟା ଆଣି ପୂର୍ବପରି ପାଚେରି ଡେଇଁ ଗବେଷଣା କୋଠରି କାନ୍ଥରେ ଲଗାଇଦେଲା ।

ଶିଢ଼ି ଚଢ଼ି ବାହାର ପଟରୁ ଝରକା ଖୋଲିପକାଇଲା । କୋଠରି ଭିତରେ କେଉଁଠି କଣ ଅଛି ତାହା ସେ ନିଜ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ବହୁବାର ଦେଖିଛି । ତେଣୁ ଗୋଟାଏ ଗ୍ରେଟ ଏକମୁହାଁ ଲଣ୍ଠନ ଧରି ସେ ସିଧା ଯାଇ ଫୁଲକନ୍ଦା ଥିବା ଆଲମାରି ଖୋଲିଦେଲା । ଦେଖିଲା, ଥାକ ଥାକ ହୋଇ କନ୍ଦା ରହିଛି । ନାଲି କନ୍ଦା, ହଳଦିଆ କନ୍ଦା, ବାଦାମୀ କନ୍ଦା—ପ୍ରତ୍ୟେକ କନ୍ଦା ଦେହରେ ଟିକଟ ଲଗି ତାର ପରିଚୟ ଲେଖାଯାଇଛି । ସବୁ ଅଛି—ନାହିଁ କେବଳ କଳା ଟ୍ୟୁଲିପ୍ କନ୍ଦା ! ! କେଉଁଠି ନାହିଁ !

ଥର ଥର କରି ତିନିଥର ଖୋଜିଗଲା ବକ୍‌ସଟେଲ୍ । ଶେଷକୁ ସେ ନିଜେ ସ୍ୱୀକାର କଲା—ଏ ଘରେ କଳା ଟ୍ୟୁଲିପ୍ କନ୍ଦା ନାହିଁ, ବଗିଚ୍ଚରେ ନାହିଁ, ଘରେ ନାହିଁ ! ଗଲା କୁଆଡ଼େ ? ସେ ପ୍ରଶ୍ନର ଏକମାତ୍ର ଉତ୍ତର

ହେଲ—ବାର୍ଲି ସେ କନ୍ଦାପୁଅ ସବୁ ଜନ ସାଙ୍ଗରେ ନେଇପଳାଇଛୁ । ଜଷ୍ଟସ୍ନୁ ନେଇ ପଳାଇଛୁ ।

## ଚୃର

ସେହ୍ନ ୨୦ ତାରିଖର ଘଟଣା ରାଜଧାନୀ ହେଗ୍‌ର ବୁଇଟନ ହଫ୍ ବନ୍ଦଶାଳା । ଆଗରେ ସଶସ୍ତ୍ର ପ୍ରହରୀ ଶିଡ଼ିଦେଇ ଦୋତାଲା ଉପରକୁ ଚ୍ଚାଲି-ଛନ୍ତି । ପ୍ରହରୀ ପଛକୁ ଚୃବଲେଣ୍ଟା ଧର ଚୃଲିଛୁ ଜେଲରକ୍ଷକ ଗ୍ରାଇଫସ୍ । ତାର ପଛକୁ ଚୃଲିଛନ୍ତି ଯୁବକ କର୍ଣ୍ଣେଲିସ୍ଯୁସ୍ ଭ୍ୟାନ୍ ବାର୍ଲି । ସମସ୍ତଙ୍କ ପଛରେ ଟିକିଏ ଦୂରରେ ଚ୍ଚାଲିଛନ୍ତି ଆଉ କେତେକ ସଶସ୍ତ୍ର ପ୍ରହରୀ ।

ଏହ୍ନ ଭାଗ୍ୟବିପର୍ଯ୍ୟୟରେ ହତବୁଦ୍ଧି ହୋଇପଡ଼ିଥିଲେ ବି କର୍ଣ୍ଣେଲିସ୍ଯୁସ୍ ମଝିମଝିରେ କୋଟ୍ ପକେଟ୍‌ରେ ହାତମାରି ଚ୍ଚାଲିଛନ୍ତି । କୋଟ୍‌ର ଭିତର ପକେଟ୍‌ରେ ତିନୋଟି ଟ୍ୟୁଲିପ୍ ପୁଅ କାଗଜ ଗୁଡ଼ିଆ ହୋଇ ନିରାପଦରେ ରହିଛୁ । କେତେ ସାଧନାର ସିଦ୍ଧି ନୁହେଁ ସେ ତିନୋଟି ! କଳା ଟ୍ୟୁଲିପ୍ କଥା ଭାବି ଭାବି ସେ ଉପରକୁ ଉଠୁଛନ୍ତି । ହଠାତ୍ ତଳ ପାହାଚ ପାଖରେ କଣ ଟିକିଏ ଖଡ଼୍ କରି ଶବ୍ଦ ହେଲା । ସାମାନ୍ୟ ଶବ୍ଦ; ଅନ୍ୟ କାହାରି ଧ୍ୟାନ ସେ ଆଡ଼କୁ ଗଲାନାହିଁ ; କିନ୍ତୁ ଅଭିବ ଘଟଣ କେ କରିବ ଅନ୍ନ ? ଅନ୍ୟମନସ୍କ କର୍ଣ୍ଣେଲିସ୍ଯୁସ୍‌ଙ୍କର ଦୃଷ୍ଟି ସେହ୍ନ ଶବ୍ଦ ଆସୁଥିବା ପାଖକୁ ଚୃଲିଗଲା ।

ତିନୋଟି ପାହାଚ ତଳେ ଶିଡ଼ିର ଗୋଟାଏ ମୋଡ଼ । ମୋଡ଼ ଉପରେ ଗ୍ରାଇଫସ୍‌ର ରହିବା କୋଠରି । କର୍ଣ୍ଣେଲିସ୍ଯୁସ ଦେଖିଲେ ଦ୍ୱାରଟା ଖୋଲା ହୋଇଯାଇଛୁ । ଦ୍ୱାରପଥରେ ଫୁଟିଉଠିଛୁ ଗୋଟିଏ ସୁନ୍ଦର ପଦ୍ମ ।

ଗ୍ରାଇଫସ୍‌ର କୁମାରୀ କନ୍ୟା ରୋଜା ହାତରେ ଗୋଟିଏ ମହମବତି ଧରି ଚୃହିଁଛୁ ନବାଗତ ବନ୍ଦୀକୁ । ମହମବତିର ଆଲୁଅଟା ଠିକ୍ ତାର ମୁହଁ ଉପରେ ପଡ଼ିଛୁ; ଦେହର ବାକି ଅଂଶଟା ରହିଛୁ ଅନ୍ଧାରରେ । କର୍ଣ୍ଣେଲିସ୍ଯୁସ୍ ଚୃହିଁଦେବାମାତ୍ରେ ଚୃରିଆଖି ଏକ ହୋଇଗଲା । ତାଙ୍କର ପାଦର ଚଳତ୍‌ଶକ୍ତି ଯେପରି ବନ୍ଦହୋଇଗଲା । ସ୍ଥାନକାଳପାତ୍ର ଭୁଲି ସେ ବିମୁଗ୍ଧ ହୋଇ

ଠିଆହୋଇଗଲେ । କି ସୁନ୍ଦର ସେ ମୁହଁଟି ସତେ ! ଘନ ଅନ୍ଧାର ଭିତରେ ସତେ ଯେପରି ଗୋଟିଏ ଉଜ୍ଜ୍ୱଳ ତାରକା । ସେ ଆଖି ଦୁଇଟିରୁ ଝରିପଡ଼ୁଛି କେତେ ଅକୁହା କରୁଣା !!

ରୋଜା ସେହି ନୂତନ ବନ୍ଦୀଟି କଥା ଶୁଣିଥିଲା । ଡି-ଉଇଟ୍ ଦୁଇ ଭାଇଙ୍କର ଜୀବନରକ୍ଷା କରିବା ଲାଗି ଏତେ ଚେଷ୍ଟା କରି ବି ସେ ବିଫଳ ହୋଇଥିଲା । ସେହି ହତଭାଗା ଡି-ଉଇଟ୍ ବଂଶର ଜଣେ ଆତ୍ମୀୟ ବନ୍ଦୀହୋଇ ଆସିଛନ୍ତି ବୋଲି ବାପା ଓ ମାଜିଷ୍ଟ୍ରେଟ୍ ଭ୍ୟାନ୍ ଷ୍ଟେନ୍‌ଙ୍କ କଥାଭାଷାରୁ ଶୁଣି ସେ ଉଚ୍ଛନ୍ନ ହୋଇପଡ଼ିଥିଲା । କରୁଣା ଓ କୌତୂହଳ ନେଇ ସେ ଶୋଇ-ଥିବା ଶେଯରୁ ଉଠିଆସିଥିଲା ନୂତନ ବନ୍ଦୀଟିର ଆକୃତି ଦେଖିବା ଲାଗି ।

କିନ୍ତୁ ଦେଖିଦେବା ମାତ୍ରେ ସେ ଚକିତ ହୋଇଗଲା । ଏହି ଦୀର୍ଘଦେହି ସୁନ୍ଦର ନବୀନ ଯୁବକ, ମୁହଁରେ ଶିଶୁର ସରଳତା, ଉର୍କି ମାରେ ସ୍ୱାଧୀନ ଆଭିଜାତ୍ୟର ସ୍ୱାଚ୍ଛନ୍ଦ୍ୟ । ଏହାଙ୍କୁ ବି ମରଣ ଦେବତାର ଦୁଆରେ ଅତିଥି ହେବାକୁ ପଡ଼ିବ ! ମହମବତିଟି ଟେକି ଧରି ରୋଜା ଚାହିଁ ରହିଥିଲା କର୍ଣ୍ଣେଲିୟସ୍‌ଙ୍କୁ । ଭିତର ଧାରଣା ଧରି କର୍ଣ୍ଣେଲିୟସ ପଛକୁ ବୁଲିପଡ଼ି ଚାହିଁଥିଲେ ରୋଜାକୁ, ତାଙ୍କ ମୁହଁରେ ମହମବତିର ଆଲୋକ ପଡ଼ୁଥିଲା । ରୋଜାର ନିର୍ନିମେଷ ନୟନରୁ ଝରିପଡ଼ୁଥିଲା ସମବେଦନା ଓ କରୁଣାର ଅଶ୍ରୁ । ସେହି ଅଶ୍ରୁଧାର କର୍ଣ୍ଣେଲିୟସଙ୍କର ଅଭାଗା ଜୀବନର ସକଳ ଜ୍ୱାଳାକୁ ଉପଶମ କରିଦେଲା ।

କିନ୍ତୁ କର୍ଣ୍ଣେଲିୟସ ଆଉ ଠିଆହୋଇ ପାରିଲେ ନାହିଁ । ତାଙ୍କୁ ଆଣୁଥିବା ପ୍ରହରୀମାନେ ନିକଟରେ ପହଞ୍ଚିଗଲେ । କର୍ଣ୍ଣେଲିୟସଙ୍କ ମୁହଁରେ ଟିକିଏ ଦୁଃଖର ହସ ଫୁଟିଉଠିଲା । ସେ ଆଉ ଅପେକ୍ଷା କରିନପାରି ଦୀର୍ଘନିଃଶ୍ୱାସ ପକାଇ ଉପରକୁ ଉଠିଗଲେ । ସିଡ଼ିରେ ଆଉ ଗୋଟାଏ ମୋଡ଼ ପଡ଼ିଲା । ମୋଡ଼ ଉପରୁ ସେ ପୁଣି ତଳକୁ ଫେରି ଚାହିଁଲେ; ସେତେବେଳେ ସୁଦ୍ଧା ହାତରେ ମହମବତୀ ଧରି ନିଶ୍ଚଳ ଭାବରେ ଠିଆ ହୋଇ ଦ୍ୱାରପଥରୁ ତାଙ୍କୁ ଚାହିଁରହିଥିଲା ବନ୍ଦଶାଳାର ସେହି ଅଚିହ୍ନା ବିମୁଗ୍ଧା ରୂପସୀ ।

ରାତି ସେତେବେଳକୁ ଅନେକ ହେଲାଣି । ଗୋଟାଏ କୋଠରିର ଚାବି ଖୋଲି ଦେଇ କର୍ଣ୍ଣେଲିୟସଙ୍କୁ ତାରି ଭିତରେ ପୁରାଇ ଦେଇ ଦେଇ

ଗ୍ରାଇଫନ୍ ଅଟ୍ଟା ହସି କହିଲା, "ଏଇଟା ତୁମର ବଂଶର କୋଠରି ହେ ! ସେଇଠି ତୁମ ଧରମବାପାଙ୍କ ଖଟ ପଡ଼ିଛି । ଯାଅ, ଆରାମରେ ଶୋଇପଡ଼ ।"

"ଧରମବାପ ?"—ବଜ୍ରାହତ ହୋଇ କର୍ଣ୍ଣେଲିୟସ୍ ପଚାରିଲେ ।

"ହଁ ହଁ କର୍ଣ୍ଣେଲିୟସ୍ ଡ-ଉଇଟ ତୁମ ଧରମ ବାପ ନୁହଁନ୍ତି କି ? ଆଜି ସକାଳଯାଏ ପରା ସେ ସେଇ ଖଟରେ ଶୋଇଥିଲେ । ଦ'ପହରି ବେଳକୁ ତାଙ୍କ ବଡଭାଇ ଆସି ତାଙ୍କୁ ନେଇଗଲେ ଯମପୁରକୁ ପଠେଇବା ପାଇଁ । ହୋଃ...ହୋଃ...ହୋଃ...ତେମେ ବିଲେଇଙ୍କ ପରି ଆଖି ବୁଜିବୁଜି ଦୁଧ ପିଉଛ । ପିଅ, ଆଜି ରାତିକ ପିଅ !" କହି କର୍ଣ୍ଣେଲିୟସ୍ଙ୍କ ଆଉ କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ଗ୍ରାଇଫନ କୋଠରିର କବାଟ ବନ୍ଦ କରି ତାଲା ପକେଇଦେଲା । ଏତେ ରାତି ହେଲାଣି, ସାମାନ୍ୟ ଜଣେ ବନ୍ଦୀ ସହିତ ସେ କାହିଁକି ଏତେ ବକ୍‌ବକ୍ ହେବ ?

କାରାଗାରର ନିର୍ଜନ କକ୍ଷ । ଏକ ଅଦ୍ଭୁତ ପରିବେଶ । ଯୁବକ କର୍ଣ୍ଣେଲିୟସ୍ ସ୍ୱପ୍ନରେ ବି ଏଭଳି ସ୍ଥାନ କଳ୍ପନା କରିନଥିଲେ । ଆଗରେ ତାଙ୍କର ଧର୍ମପିତାଙ୍କର ଶଯ୍ୟା । ଭୟ ଓ ଭକ୍ତିରେ ସେ ସେଥିଉପରେ ହାତ ବୁଲାଇ ଆଣିଲେ । ସାମାନ୍ୟ ଖଣ୍ଡେ ପଟା ଖଟ । ହାୟ ରେ ଭାଗ୍ୟ ! ବସୁ-ବସୁ ତାରି ଉପରେ ଢଳାଇ ପଡ଼ିଲେ କର୍ଣ୍ଣେଲିୟସ୍ । ହୃଦୟ ଯାହାର ନିଷ୍କପଟ ତାଙ୍କୁ ବିପଦବେଳେ ବି ଶାନ୍ତିରେ ନିଦ ହୁଏ । ସକାଳୁ ସକାଳୁ ନିଦ ଭାଙ୍ଗିଗଲା । ସେ ଝରକାର ବାହାରକୁ ଚାହିଁଲେ । ସକାଳର ଝାପ୍‌ସା ଆଲୁଅ ଭିତରେ ସେ ଦେଖିଲେ ବନ୍ଦଶାଳା ସମ୍ମୁଖରେ ଥିବା ଫାଶିପଡିଆର ଫାଶିଖୁଣ୍ଟରେ କଣ ଦୁଇଟି ଜିନିଷ ଝୁଲୁଛି । ବିସ୍ମିତ ହୋଇ ସେ ଭଲକରି ଚାହିଁ ଦେଖନ୍ତି ତ ଏକା ଫାଶିଖୁଣ୍ଟରେ ଉପରକୁ ଗୋଡ଼ ଓ ତଳକୁ ମୁଣ୍ଡ କରି ଦୁଇଟି ନରକଙ୍କାଳ ଝୁଲୁଛି । ଖୁଣ୍ଟଦେହରେ ଟଙ୍ଗା ହୋଇଛି ଗୋଟିଏ ପଟା । ପଟାରେ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଛି, "ଦୁଇଜଣ ସଇତାନ ଜନ୍ ଡ-ଉଇଟ୍ ଓ କର୍ଣ୍ଣେଲିୟସ୍ ଡ-ଉଇଟ୍‌ଙ୍କୁ ଦେଶର ସ୍ୱାଧୀନ ନାଗରିକମାନେ ଦେଶଦ୍ରୋହ ଅପରାଧରେ ଏହି ଦଣ୍ଡ ଦେଇଛନ୍ତି ।"

କର୍ଣ୍ଣେଲସ୍ମସ୍ଙ୍କ ମୁହଁରୁ ଆର୍ତ୍ତ ଚିତ୍କାର ବାହାରି ପଡ଼ିଲା । ହାୟ, ହାୟ ହୋଇ ସେ କୋଠରିର ଦୁଆର ଝରକାଗୁଡ଼ାକୁ ପାଗଳଙ୍କପରି ଆଘାତ କରିବାକୁ ଲାଗିଲେ । ଧଡ଼୍‌ଧାଡ଼୍ ଶବ୍ଦରେ ବିରକ୍ତ ହୋଇ ଗ୍ରାଇଫସ୍ ଦୌଡ଼ିଯାଇ କୋଠରିର ଦୁଆର ଖୋଲିଦେଇ ପଚାରିଲା, "କାହିଁକି ଏଭଳି ଛେଚପିଟି ହେଉଚ ଶୁଣେ ?"

ଝରକା ଆଡ଼କୁ ହାତ ଦେଖାଇ କର୍ଣ୍ଣେଲସ୍ମସ୍ ପଚାରିଲେ, "ସେଠିକି ଗୁହିଁଲଣି ?—ସେ···ସେ କଥା କ'ଣ ସତ ?"

ଗୋଟାଏ ବଦ୍ରୂପର ହସ ହସିଦେଇ ଗ୍ରାଇଫସ୍ କହିଲା, "ସେ ପଟାରେ ଯାହା ଲେଖାଯାଇଛନ୍ତି ? ଖାଲି ସତ କ'ଣ ମ, ଖାଣ୍ଟି ସତ ନା !! ଦେଶ-ଦ୍ରୋହିଙ୍କୁ ତ ସେଇଆ ଯୋଗାଏ ।"

"ଓଃ !—ଲୋକେ ତାହାହେଲେ ସେମାନଙ୍କୁ ଏହିଭଳି ଭାବରେ ହତ୍ୟାକଲେ !" କହୁ କହୁ କର୍ଣ୍ଣେଲସ୍ମସ୍‌ଙ୍କର ଦେହକୁ ଗୋଟାଏ ଥଣ୍ଡାଝାଳ ବୋହିଗଲା । ସେ ଦୁଲ୍‌କରି ଖଟଉପରେ ପଡ଼ିଗଲେ ।

"ହତ୍ୟା ନୁହେଁ ହେ, ହତ୍ୟା ନୁହେଁ , ଏହାକୁ କହନ୍ତି ଜନତାର ବିଚାର । ତୁମକୁ ବି ଜନତାର ବିଚାର ମିଳିବ ।" ମତ ଦେଇସାରି ଗ୍ରାଇଫସ୍ ଦେଖେ ତ କର୍ଣ୍ଣେଲସ୍ମସ ଖଟରେ ପଡ଼ୁ ପଡ଼ୁ ଅଚେତ ହୋଇଯାଇଛନ୍ତି । କେଜାଣି କି ପ୍ରମାଦ ଅଛି ଭାବି, ସେ ଚଟ୍‌କରି ଦୁଆରେ ତାଲି ପକାଇ-ଦେଇ ତଳକୁ ପଳାଇଆସିଲା ।

ଅଚେତ୍ ହୋଇ କିଛି ସମୟ ପଡ଼ିବା ପରେ ଧୀରେ ଧୀରେ କର୍ଣ୍ଣେଲସ୍ମସ୍‌ଙ୍କର ଚେତନା ଫେରିଆସିଲା । ସେ ନତଜାନୁ ହୋଇ ଜେଲ୍ କୋଠରି ଭିତରେ ବସି ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ—"ହେ ପ୍ରଭୁ, ସେମାନେ ନିରପରାଧ ! କ୍ଷମାକର ସେମାନଙ୍କୁ । ସେମାନଙ୍କ ଆତ୍ମାର ସଦ୍‌ଗତି ହେଉ ।" ଭଗବତ୍ ପ୍ରାର୍ଥନାରେ ମନୁଷ୍ୟର ଅନ୍ତର୍ବଳ ବଢ଼ିଯାଏ । ଭ୍ୟାନ୍ ବାର୍ଲିଙ୍କ ଅନ୍ତରରେ ବି ଏକ କ୍ଷୀଣ ଆଶାର ଦୀପ ଜଳିଉଠିଲା । ତାଙ୍କର ଏତେ ସାଧନାର ଫଳ ଏହି କଳା ଟ୍ୟୁଲିପ୍ ଫୁଆ ତିନୋଟି କ'ଣ ତଥାକଥିତ ଜନତାର ଅମାନୁଷିକ ବିଚାର ହାତରୁ ବଞ୍ଚିପାରିବନାହିଁ ?

ପକେଟ୍ ଭିତରୁ ଧୂଆ ଢେଙ୍କୋଟିକୁ କାଢ଼ି ସେ ଟିକଏ ଶୁଙ୍ଘିଲେ । ସେହି କାଗଜ ଖଣ୍ଡିକରେ ପୂର୍ବପରି ଗୁଡ଼ାହୋଇ ରହିଛି । ଧୂଆ ଢେଙ୍କୋଟିକୁ ଚୁପ୍‌କରି ନେଇ କୋଠରିର ଗୋଟିଏ ଅନ୍ଧାରୁଆ କୋଣରେ ଥିବା ପଥର କଡ଼ରେ ଲୁଚ୍ଛାଇଦେଲେ ।

ସେଦିନ ସନ୍ଧ୍ୟାର କଥା । ଗ୍ରାଇଫସ୍ କର୍ଣ୍ଣେଲିୟସ୍‌ଙ୍କର କୋଠରିର ଦ୍ୱାର ଖୋଲି ତାଙ୍କର ରାତ୍ରଭୋଜନ ନେଇ ଭିତରକୁ ପଶୁ ପଶୁ ତା'ର ଗୋଡ଼ଟା ଖସିଗଲା । ବିଚରା କଡ ହୋଇ ତଳେ ପଡ଼ିଗଲା । ମାଂସଝୋଳ ସବୁ ଢାଳିଗଲା । ହାତଭରା ଦେଇ ଉଠୁ ଉଠୁ ସଟ୍‌କରି ହାତ ଖସିଗଲା ଯେ, ସେ ପୁଣି ପଡ଼ିଗଲା ତଳେ । କର୍ଣ୍ଣେଲିୟସ୍ "ଆହା, ଆହା !" କହି ତା ପାଖକୁ ଦୌଡ଼ିଯାଇ ତାକୁ ଟେକି ଉଠାଇଲେ । ଚଉକିରେ ବସାଇ କେଉଁଠି ମାଡ଼ ବାଜିଲା ଦେଖୁ ଦେଖୁ ଗ୍ରାଇଫସ୍‌ର ଚେତନା ବୁଡ଼ିଗଲା । କଣଟା ଏପରି ପଡ଼ିଗଲା ତାହା ଦେଖିବା ଲାଗି ରୋଜା ଉପରମହଲାରୁ ଛୁଟିଆସିଲା । ସେତେବେଳକୁ କର୍ଣ୍ଣେଲିୟସ୍ ହାତ ସଜାଡ଼ିବାରେ ଲାଗିଗଲେ । ରୋଜା ଆସି ବ୍ୟସ୍ତହୋଇ ପଚାରିଲା···

"କ'ଣ ହେଲା ବାପାଙ୍କର ?"

"ବାପାଙ୍କର ଗୋଡ଼ ଖସିଯିବାରୁ ତଳେ ପଡ଼ିଗଲେ । ହାତର ହାଡ଼ ଭାଙ୍ଗିଯାଇଛି ।" କର୍ଣ୍ଣେଲିୟସ୍ କହିଲେ ।

"ହାୟ, ହାୟ! ମୁଁ କଣ କରିବି ?—ଆପଣ କଣ ଡାକ୍ତର ?" ରୋଜା ପଚାରିଲା ।

"ହଁ, ମୁଁ ଡାକ୍ତରୀ କରୁଥିଲି । ତୁମେ ଶୀଘ୍ର ଯାଇ ଦୁଇଖଣ୍ଡ ସ୍ଲେଟ କାଠପଟା ଓ କିଛି କନା ଓ ଦଉଡ଼ି ନେଇଆସ, ମୁଁ ଆଗ ବ୍ୟାଣ୍ଡେଜଟା କରିଦିଏ ।"

"ଓଃ, ଅଶେଷ ଧନ୍ୟବାଦ ।"

"ପ୍ରୟୋଜନ ନାହିଁ । ଅପରକୁ ସାହାଯ୍ୟ କରିବା ତ ପ୍ରତ୍ୟେକ ଖ୍ରୀଷ୍ଟିୟାନ୍‌ର ଧର୍ମ ।"

"ସତ, କିନ୍ତୁ ଏହାଙ୍କ ପରି ଅମଣିଷକୁ ସାହାଯ୍ୟ କରୁଥିବା ଲୋକ ଦେଖିବାକୁ ମିଳନ୍ତି ନାହିଁ ।"

ଏତିକିବେଳେ ଗ୍ରାଇଫସ୍‌ର ଚେତନା ଫେରିଆସିଲା । ସେ ସେତେବେଳେ ଶୁଣିଲା ଯେ କର୍ଣ୍ଣେଲ୍‌ସ୍ମିଥ୍ ଜଣେ ଡାକ୍ତର, ସେ ତାଙ୍କ ହାତରେ ବ୍ୟାଣ୍ଡେଜ ବାନ୍ଧିବା ଲାଗି ରାଜିହୋଇଗଲା । ରୋଜା ବି ଅବିଳମ୍ବେ ସବୁ ଜିନିଷ ଆଣି ଯୋଗାଇଦେଲା ।

ଭଙ୍ଗା ହାଡ଼ଟା ଖଞ୍ଜୁ ଖଞ୍ଜୁ ଗ୍ରାଇଫସ୍ ଅତ୍ୟଧିକ ବେଦନା ଅନୁଭବ କରି ପୁଣି ବେହୋସ ହୋଇଗଲା । ରୋଜା ଓ କର୍ଣ୍ଣେଲ୍‌ସ୍ମିଥ୍ ଦୁହେଁ ମିଶି ବ୍ୟାଣ୍ଡେଜ୍ ବାନ୍ଧି ତାକୁ ଶୁଆଇଦେଲେ । ବାପାଙ୍କର ଏ ଅଚେତନ ଅବସ୍ଥା ଦେଖି ରୋଜା ପ୍ରସ୍ତାବ କଲା, "ଆପଣ ବାପାଙ୍କର ଯଥେଷ୍ଟ ଉପକାର କରିଛନ୍ତି । ଏଥର ଟିକିଏ ନିଜର ଉପକାର କରନ୍ତୁ ।"

"ମାନେ ।"

"ଆଉ ବିଳମ୍ବ ନକରି ଶୀଘ୍ର ଏଠାରୁ ପଳାନ୍ତୁ । ସୁନ୍ଦର ସୁଯୋଗ ମିଳିଛି, ଆପଣ ନିଶ୍ଚୟ ଖସି ଚାଲିଯାଇପାରିବେ ।"

କର୍ଣ୍ଣେଲ୍‌ସ୍ମିଥ୍ କିନ୍ତୁ ସେ ଧରଣର ଲୋକ ନୁହନ୍ତି । ସେ ଅବିଚଳିତ ଭାବରେ କହିଲେ, "ଧନ୍ୟବାଦ; ଆପଣ ମୋ ଲାଗି ବ୍ୟସ୍ତ ହେବେନାହିଁ । ମୁଁ କୌଣସି ଅପରାଧ କରିନାହିଁ, ବିଚାରକମଣ୍ଡଳୀ ଆଗରେ ଠିଆହେବାକୁ ଡରିବି କାହିଁକି ?"

ନିରାଶ ହୋଇ ରୋଜା କହିଲା, "ଓ-ଉଇଟ୍ ଦୁଇଭାଇ ବି ନିରପରାଧ ଥିଲେ; କିନ୍ତୁ ଦେଖିଲେ ତ ଅବସ୍ଥା କଣ ହେଲା ? ଦୟାକରି ମୋ କଥା ମାନନ୍ତୁ, ଏତିକିବେଳେ ଖସିପଳାନ୍ତୁ ।"

କର୍ଣ୍ଣେଲ୍‌ସ୍ମିଥ୍ ମୃଦୁ ହସଟିଏ ହସିଦେଇ ସବୁ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଲେ ।

"ହଉ ପାଟି କରନ୍ତୁ ନାହିଁ; ବାପା ଶୁଣିବେ ।"

"କ୍ଷତି କଣ ?"

"ସେ ଆଉ ମତେ ଏଠାରୁ ଆସିବାକୁ ଦେବେନାହିଁ; ସେ ଭାରି ନିଷ୍ଠୁର ଲୋକ । ହାୟ, ହାୟ, ଆପଣଙ୍କ ପରି ମହତ୍ ଲୋକଙ୍କୁ ବି

ସେମାନେ ପ୍ରାଣଦଣ୍ଡ ଦେଇଦେବେ ! ଆପଣ ବି ଡି-ଭିଇଟ୍‌ଙ୍କ ଦଶା ଭୋଗିବେ !"

ଠିକ୍ ସେତିକବେଳକୁ ଗ୍ରାଇଫସ୍‌ର ଚେତନା ଫେରିଲା । ସେ ଆଖି ମଳମଳ ଗର୍ଜନକରି ଉଠିଲା, "ହଇଲୋ, ସେ ସଇତାନ୍ ଡି-ଭିଇଟ୍ ଭାଇଙ୍କ କଥା କଣ କହୁଛୁ ?"

ଘୋଡ଼ା ଗୋଟାଏ ଛଳନାକରି କହିଲା, "କାହିଁ କିଛି ନାହିଁ ତ, ବାପା ! ମୁଁ ଡାକ୍ତରବାବୁଙ୍କୁ ପଚାରୁଥିଲି, ବାପା କ'ଣ ଖାଇବେ ।"

"ଓଃ, ଯଥେଷ୍ଟ ହୋଇଛି । ତତେ କହିରଖୁଛି, ତୁ ଆଉ ଦିନେ ଏ କଇଦୀମାନଙ୍କ କୋଠରୀକୁ ଆସିବୁନାହିଁ । ଚାଲିଲୁ, ମୁଁ ଯାଏ ଏଠୁ ।"

## ପାଞ୍ଚ

ବାଉଣ ତାରିଖଦିନ ସକାଳୁ ବନ୍ଦଶାଳାର ଅଦାଲତ ଘରେ ନୂତନ ବନ୍ଦୀର ବିଚାରଲାଗି ଆୟୋଜନ ଆରମ୍ଭ ହୋଇଗଲା । କେତେଜଣ ବିଚାରପତି ପହଞ୍ଚିଗଲେ । ପ୍ରହରୀମାନେ ବନ୍ଦୀ କର୍ଣ୍ଣେଲିୟସ୍‌ଙ୍କୁ ନେଇ ଅଦାଲତ ଆଗରେ ଠିଆକରାଇଦେଲେ । ବିଚାର ଆରମ୍ଭରେ ଡଚ୍‌ର ମାଜିଷ୍ଟ୍ରେଟ୍ ଭ୍ୟାନ ଷ୍ଟେନ୍‌ଙ୍କର ଜମାନବନ୍ଦି ଶୁଣାଗଲା । କର୍ଣ୍ଣେଲିୟସ୍‌ଙ୍କୁ ଜଣେ ଅସଲ ଦେଶଦ୍ରୋହୀ ରୂପରେ ସବୁପ୍ରକାରେ ଚର୍ଚ୍ଚିତ କରି ଭ୍ୟାନ୍ ଷ୍ଟେନ୍ ତାଙ୍କର ଜମାନବନ୍ଦି ଦେଇସାରିବା ପରେ କର୍ଣ୍ଣେଲିୟସ୍‌ଙ୍କୁ କହିବାକୁ ଦିଆଗଲା । କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି ସବୁ ସତ୍ୟ କଥା କହିଗଲେ ।

କର୍ଣ୍ଣେଲିୟସ୍ ଡି-ଭିଇଟ୍‌ଙ୍କ ସହିତ ତାଙ୍କର ଘନିଷ୍ଠ ସ୍ନେହ ସମ୍ପର୍କ ଥିଲା । ବୁଦ୍ଧିହେବା ଦିନରୁ ସେ ତାଙ୍କୁ ହିତାକାଂକ୍ଷୀ ବୋଲି ଜାଣନ୍ତି । ସେ ମହାଶୟ ଦିନେ ସିଲ୍ ମୋହର ଦେଇ ବନ୍ଧାଯାଇଥିବା ତାଡ଼ାଏ କାଗଜ ଆଣି ତାଙ୍କ ପାଖରେ ରଖିଦେଇଗଲେ । ହଁ, କହିଗଲେ ସେ କାଗଜଗୁଡ଼ାକ ଖୁବ୍ ଗୋପନୀୟ । ପାଖରେ ସେତେବେଳେ କେହି ନ ଥିଲେ । ଡି-ଭିଇଟ୍‌ଙ୍କ ହାତରୁ କାଗଜତକ ନେଇ ସେ ଫୁଲକନ୍ଦା ଆଲମାରି

ଭିତରେ ରଖିଦେଲେ । ସେହି ଦିନଠାରୁ ସେ ସେଥିରେ ହାତ ଦି ଦେଇ-ନାହାନ୍ତି ।

ବିଚାରକମାନେ ଅଦ୍ଭୁତ ଯୁକ୍ତି ଦେଖାଇ କହିଲେ, "ଫୁଲଗୃହରେ ତୁମର ଏତେ ନିଶା । ପ୍ରତିଦିନ ତ ଫୁଲକଣ୍ଢା ଦେଖିବା ଲାଗି ଆଲମାରିଟା ଠିକ-ଚାରିଥର ଖୋଲୁଥିବ । ଏସବୁ କାଗଜରେ ହାତ ବାଜନାହିଁ ବୋଲି କପରି କହୁଛ ? ତୁମ କଥାରେ କପରି ବିଶ୍ୱାସ ଯିବା ?"

"ବିଶ୍ୱାସ କରିବା ନ କରିବା ଆପଣଙ୍କର ମରଜି । ଯାହା ସତ୍ୟ ମୁଁ ତାହା କହିଗଲି । ହାତ ଯଦି ବାଜିଥିବ, ତେବେ ମୋର ଅଜ୍ଞାତସାରରେ ବାଜିଥିବ ।"

ଯେଉଁ ବିଚାରକମାନେ ପୂର୍ବରୁ ରାୟ ସ୍ଥିରକରି ଆସିଥିବେ, ସେମାନଙ୍କ ଆଗରେ ସତ କଥାର କୌଣସି ଅର୍ଥ ନାହିଁ । କି ରାୟ ଦେବାକୁ ହେବ, ସେମାନଙ୍କୁ ରାଜା ଉଇଲିୟମଙ୍କଠାରୁ ତା'ର ନିର୍ଦ୍ଦେଶ ମିଳିସାରିଛି । ଏ ସବୁ ଯାହା ହେଉଛି, କେବଳ ଗଣତନ୍ତ୍ରର ଦୋହି ଦେବାଲାଗି ଗୋଟାଏ ପ୍ରହସନ ଅଭିନୟ । ପ୍ରହସନ ଶେଷ ହେବାକୁ ସମୟ ଲାଗିଲା ନାହିଁ । ଟିକଏ ପରେ ରାୟ ଶୁଣାଇଦେବେ ବୋଲି କହି ବିଚାରକମାନେ କର୍ଣ୍ଣେଲିୟସ୍‌ଙ୍କୁ ତାଙ୍କ କୋଠରିକି ପଠାଇଦେଲେ ।

କର୍ଣ୍ଣେଲିୟସ୍ ଆସି ତାଙ୍କ କୋଠରିରେ ପହଞ୍ଚିବାର ଅଳ୍ପକ୍ଷଣ ମଧ୍ୟରେ ବଧଶାଳାର ସହକାରୀ ରକ୍ଷକକୁ ସଙ୍ଗରେ ନେଇ ଜଣେ ମାଜିଷ୍ଟ୍ରେଟ୍ ଆସି ସେଠାରେ ପହଞ୍ଚିଗଲେ ।

ରକ୍ଷକଙ୍କ ପଛେ ପଛେ ଅନ୍ତରର କୋହ ଓ ଆଖିର ଲୁହ ଲୁଚାଇ ରୋଜା ବି କୋଠରି ଭିତରକୁ ଚାଲି ଆସିଲା । ଗ୍ରାଇଫସ୍ ତେଣେ ଆହତ ହୋଇ ଶେଯରେ ପଡ଼ିଥାଏ । ମାଜିଷ୍ଟ୍ରେଟ୍ ଅଦାଲତ ରାୟ ପଢ଼ି ଶୁଣାଇ-ଦେଲେ ଯେ କର୍ଣ୍ଣେଲିୟସ୍‌ଙ୍କୁ ଅଦାଲତ ପ୍ରାଣଦଣ୍ଡ ଦେଇଛନ୍ତି, ତାଙ୍କୁ ଫାଶୀରେ ଚଢ଼ା ନଯାଇ ଘାତକ ହାତରେ ନିହତ କରାଯିବ । କର୍ଣ୍ଣେଲିୟସ୍ ଅବିଚଳିତ ଭାବରେ ରାୟ ଶୁଣିଲେ । ମାଜିଷ୍ଟ୍ରେଟ୍ ପଚାରିଲେ, "ତୁମର କିଛି କହିବାର ଅଛି ?"

"ନା, ତେବେ କେଉଁ ଦୋଷରୁ ମୋତେ ପ୍ରାଣଦଣ୍ଡ ମିଳିଲି ବୋଲି ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ଏହାକୁ ହିଁ ଲୋକେ ନ୍ୟାୟ ବିଚାର ବୋଲି କହନ୍ତି !!—ହଁ, ତାହାହେଲେ ଏ ଦଣ୍ଡଟା କେଉଁ ଦିନ ଦିଆଯିବ ?"

ମୃତ୍ୟୁଦଣ୍ଡରେ ଦଣ୍ଡିତ ବ୍ୟକ୍ତିଠାରୁ ଏଭଳି ପ୍ରଶ୍ନ ଶୁଣି ମାଜିଷ୍ଟ୍ରେଟ୍ ବିସ୍ମିତ ହୋଇଗଲେ । ସେ ଜଣାଇଦେଲେ, "ଆଜି ଦିନ ବାରଟାରେ !"

"ଓଃ, ଦଶଟା ତ କେତେବେଳୁ ବାଜିଗଲାଣି । ଆଉ ତାହାହେଲେ ଘଣ୍ଟାଏ ଦେଢ଼ଘଣ୍ଟା ରହିଲା ?"

"ହଁ । ଏତିକି ସମୟ ଭିତରେ ତୁମେ ଭଗବାନଙ୍କ ନିକଟରେ ଆତ୍ମନିବେଦନ କରି କଟାଇପାର । ମୃତ୍ୟୁପୂର୍ବରୁ ପ୍ରତ୍ୟେକ ଅପରାଧୀଙ୍କୁ ଆମେ ସେ ସୁବିଧା ଦେଇଥାଉ । ଯଦି ଦରକାର କର, ତୁମର ଆସ୍ଥା ଥିବା କୌଣସି ପାଦ୍ରୀଙ୍କୁ ଡକାଇଦିଆଯିବ ।"

"ଧନ୍ୟବାଦ ! ଆସ୍ଥା ମୋର ସବୁ ପାଦ୍ରୀଙ୍କଠାରେ ଅଛି ; କିନ୍ତୁ ମହାଶୟ, ମୁଁ ମୋ ଜ୍ଞାତସାରରେ କୌଣସି ଅପରାଧକରିନାହିଁ । ଅଜ୍ଞାତ-ସାରରେ ଯଦି କିଛି ପାପ କରିଥିବି, ତେବେ ଅନ୍ତର୍ଯାମୀ ଭଗବାନ ମୋର ନିଜ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ କ୍ଷମାକରିବେ ।"

ମାଜିଷ୍ଟ୍ରେଟ୍ ଭାବିଲେ ଏଗୁଡ଼ାକ ଦମ୍ଭୋକ୍ତି । ଏ ଲୋକ ସହିତ ଯୁକ୍ତି କରି ଫଳନାହିଁ ଭାବି ସେ ବିଦାୟ ନେଇ ଚାଲିଗଲେ । ବନ୍ଦିଶାଳାର ସହକାରୀ ରକ୍ଷକ କୋଠରିରେ ତାଲା ପକାଇବାକୁ ଯାଉଛନ୍ତି, ରୋଜା ଯାଇ ତାଙ୍କ କାନରେ କହିଲା, "ମଜିସା···!" ରକ୍ଷକ କିଛି ନକହି ତାଲା ଖୋଲିଦେଇ ଯାଇ ଦୂରରେ ଶିଡ଼ିପାଖରେ ବସିପଡ଼ିଲେ । କର୍ଣ୍ଣେଲିୟସ୍‌ଙ୍କୁ ଏକାନ୍ତରେ ପାଇ ରୋଜାର ଅନ୍ତରର କୋହ ଅବାଧ ହୋଇଉଠିଲା । ସେ କହିକହି ହୋଇ କାନ୍ଦିପକାଇଲା, "ହାୟ, ହାୟ···" କହୁକହୁ କଣ୍ଠ ତାର ରୁଦ୍ଧ ହୋଇଗଲା ।

କର୍ଣ୍ଣେଲିୟସ୍‌ଙ୍କର ଭାଗ୍ୟବିପର୍ଯ୍ୟୟରେ ସେ ଯେତେ ମର୍ମାହତ, ତାହା ସହଜରେ ବୁଝିହୋଇଗଲା । କର୍ଣ୍ଣେଲିୟସ ମୁଗ୍ଧ ହୋଇଗଲେ । ଦେହର ସୌନ୍ଦର୍ଯ୍ୟଠାରୁ ତାହାର ଅନ୍ତରର ମାଧୁର୍ଯ୍ୟ ଆହୁରି କେତେ ମନୋହର

ନୁହଁ !! ସେ କୋମଳ ଦରଦଭରା କଣ୍ଠରେ ତାକୁ ସାନ୍ତ୍ୱନା ଦେଇ କହିଲେ, "ଆହା, ତୁମେ କାହିଁକି କାନ୍ଦୁଛ କହିଲ ?···ମୋ ପରି ଜଣେ ହତଭାଗା ବନ୍ଦୀ ପାଇଁ ତୁମର ଏତେ କରୁଣା !! ଧନ୍ୟବାଦ । ଭଗବାନ ତୁମର ମଙ୍ଗଳ କରନ୍ତୁ ! ତୁମର ନାଁ କ'ଣ କହିଲ ?" କହୁ କହୁ କର୍ଣ୍ଣେଲସୁସ ରେଜାର ହାତ ଧରିପକାଇଲେ ।

"ମୋ ନା ରେଜା । ବାପା ଆପଣଙ୍କ ପ୍ରତି ଯେଉଁ କଠୋର ବ୍ୟବହାର କରିଛନ୍ତି, ମୁଁ ସେଥିଲାଗି କ୍ଷମା ମାଗିବାକୁ ଆସିଛି ।"

"ସେ କିଛି ନୁହଁ, ସେ ତ ତାର ଦଣ୍ଡ ପାଇସାରିଛନ୍ତି । ଏତେ ବ୍ୟସ୍ତ ହେବାର କ'ଣ ଅଛି । ହଁ, ମୁଁ ବି ତାଙ୍କୁ କ୍ଷମାଦେଉଛି ।"

"ଧନ୍ୟବାଦ । ···ହାୟ···ଆପଣଙ୍କୁ ସେମାନେ ହତ୍ୟାକରିବେ— ଏହି ଅଳ୍ପ ସମୟ ମଧ୍ୟରେ ମୁଁ ଆପଣଙ୍କର କି ସେବା କରିପାରେ, କହନ୍ତୁ ଦୟାକରି କହନ୍ତୁ ।" କାନ୍ଦି କାନ୍ଦି ରେଜା କହିଲା ।

"ରେଜା, ମୋର ଅନୁରୋଧ ତୁମେ ଆଉ ଲୁହ ଢାଳନାହିଁ ।"

"କିନ୍ତୁ ଆପଣଙ୍କର କି ସେବା ମୁଁ କରିପାରେ, କହନ୍ତୁ ?"

"ମୋ ପରି ଜଣେ ମରଣଯାତ୍ରୀ ଲୋକର ଆଉ କି ସେବା ଦରକାର କହିଲ ? ମୋର ଧାରଣା ନଥିଲା ଯେ, ଏ ସଂସାରରେ ମୋ ଧାଇମା' ସ୍ୟଙ୍କ ବ୍ୟତୀତ ମତେ ଆଉ କେହି ଏତେ ଶ୍ରଦ୍ଧାକରେ, ଭଲପାଏ । ତୁମର ଏହି ସମବେଦନା ଲାଗି ମୁଁ କୃତଜ୍ଞତା ଜ୍ଞାପନକରୁଛି । ମୁଁ ତ ଆଉ ଦେଡ଼ଘଣ୍ଟା ପରେ ଇହଧାମରୁ ବିଦାୟ ନେବି । ମନେରଖିଥିବ—ମୋ ପରି ଜଣେ ନିର୍ବାନ୍ଧବ ଲୋକକୁ ଆଉ କିଏସେ ମନେପକାଇବ ?

"ନିର୍ବାନ୍ଧବ କାହିଁକି କହୁଛନ୍ତି, ଆପଣଙ୍କ ବନ୍ଧୁତ ଆପଣଙ୍କ କଥା ବୁଝିବା ଲାଗି କାଲି ବାପାଙ୍କ ପାଖକୁ ତିନିଥର ଆସିଥିବେ ।"

"ମୋ ବନ୍ଧୁ ? ଆଶ୍ଚର୍ଯ୍ୟ !! ନା ନା, ବନ୍ଧୁ ବୋଲି କେହି ନାହାନ୍ତି ।"

"କେହି ନାହାନ୍ତି ?" କ୍ଷୋଭ ପ୍ରକାଶ କରି ରେଜା ପଚାରିଲା ।

"ନା···"—କହୁ କହୁ କର୍ଣ୍ଣେଲସ୍ବଫ୍ ଅଟକିଗଲେ । ଠିକ୍ ସେତିକି-ବେଳକୁ ଠନ୍ ଠନ୍ କରି ଘଣ୍ଟାରେ ଏଗାରଟା ବାଜିଗଲା । ଯୁବକ କର୍ଣ୍ଣେଲସ୍ଙ୍କ ଆଖିଆଗରେ ଝେଲିଗଲା ଏକ ଉଜ୍ଜ୍ୱଳ ଆଲୋକ । ଏତେ କରୁଣା, ଏତେ ଅନୁକମ୍ପା ଯାହାର ହୃଦୟରେ, ସେ କ'ଣ ବନ୍ଧୁ ନୁହେଁ ? ଅନ୍ତର ଯାହାର ଏତେ ନିର୍ମଳ, ତାକୁ ବିଶ୍ୱାସ କଲେ ଦୋଷ କ'ଣ ? ଏତେ ଦିନର ସାଧନାର ଫଳ କଳା ଟ୍ୟୁଲିପ୍ ପୁଅ ତିନୋଟି ତାଙ୍କର ମୃତ୍ୟୁପରେ ଲୋକଲୋଚନର ଅନ୍ତରାଳରେ ପଡ଼ି ଶୁଖିଯିବ କିନା ! ଘାତକ ଯେତେ-ବେଳେ ତାଙ୍କ ମୁଣ୍ଡ ଗଣ୍ଡି ଅଲଗା କରିଦେବ, ସେତେବେଳେ ତାଙ୍କର ନବସୃଷ୍ଟିର ସୁନିଶ୍ଚିତ ସମ୍ଭାବନା ଭ୍ରୂଣରେ ହିଁ ବିନଷ୍ଟ ହୋଇଯିବ । ବରଂ ଏହି ସରଳା ତରୁଣୀଟି ହାତରେ ଯଦି ସେହି ଅମୂଲ୍ୟ ସାମଗ୍ରୀର ଭାର ଦିଆଯିବ, ତେବେ କଣ ମୃତ୍ୟୁପରେ ବି ତାଙ୍କ ଆତ୍ମା ଶାନ୍ତି ପାଇବନାହିଁ ? ସେ କଣ କଳା ଟ୍ୟୁଲିପ ଫୁଟାଇ ଆଜିର ଏହି ମୃତ୍ୟୁଦଣ୍ଡରେ ଦଣ୍ଡିତ ଭ୍ୟାନ୍ ବାର୍ଲିକ୍ କୁ ଚିରଦିନ ଲାଗି ଅମର କରିପାରିବ ନାହିଁ ?—ହଁ, ସେ ପାରିବ । ସେ ବିଶ୍ୱାସଘାତକତା କରିବ ନାହିଁ । ରୋଜା ! ଏହି ରୋଜା ! ନାମ ଓ ରୂପକୁ ଏହାର ଅନ୍ତରର ଗୁଣ ଯଥାର୍ଥରେ ସାର୍ଥକ କରୁଛି । ହାୟ, କର୍ଣ୍ଣେ-ଲସ୍ବଙ୍କୁ ଯଦି ମରିବାକୁ ପଡ଼ନ୍ତା ନାହିଁ···ବିବାହ ଚିନ୍ତା ସେ କୌଣସି ଦିନ କରିନଥିଲେ; କିନ୍ତୁ ଆଜି ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଚିନ୍ତା ତାଙ୍କର ତରୁଣ ହୃଦୟକୁ ଏକ ମଧୁର ମାଦକତାରେ ଭରିଦେଲା । ବିବାହ ଯଦି କରନ୍ତେ, ତେବେ କରନ୍ତେ ଏହିଭଳି ଏକ ସରଳା ସୁନ୍ଦରୀ ଦୟାବତୀ ତରୁଣୀକୁ ।—ହଁ, ଏହି ରୋଜାକୁ । କିନ୍ତୁ ଜୀବନ ତ ଗୁଲିଯିବ ଆଉ ଅଧଘଣ୍ଟାକ ଭିତରେ । ହାତ୍ତରେ ନିୟତିର ପରିହାସ ! ତଥାପି ସେ ତାକୁ ସାଧନାର ସଙ୍ଗିନୀ କରିନେବେ ।

ନିଜର ଅସମ୍ପୂର୍ଣ୍ଣ ବାକ୍ୟକୁ ସମ୍ପୂର୍ଣ୍ଣ କରି ଯୁବକ କର୍ଣ୍ଣେଲସ୍ବସ୍ କହିବାକୁ ଆରମ୍ଭ କଲେ, "ତେବେ, ତୁମେ ଯଦି···"

"ମୁଁ ?" ସଂଶୟ ଓ ବିସ୍ମୟ ପ୍ରକାଶ କରି ରୋଜା ପଚାରିଲା ।

"ହଁ ତୁମେ । ତୁମେ ଯଦି ମୋର ଗୋଟିଏ ଅସମାପ୍ତ କାର୍ଯ୍ୟର ଭାର

ନଅନ୍ତ, ତେବେ ଜୀବନ ମୋର ସାର୍ଥକ ହୋଇଯାଆନ୍ତା । ମୁଁ ମରଣରେ ବି ଶାନ୍ତି ପାଆନ୍ତି; ସ୍ୱର୍ଗଲାଭଠାରୁ ଅଧିକ ଆନନ୍ଦ ପାଆନ୍ତି ଏବଂ ତୁମେ ପାଆନ୍ତ ଏକ ଲକ୍ଷ ଗିଲ୍‌ଡ଼ର୍‌ର ଏକ ବଡ଼ିଆ ପୁରସ୍କାର ।"

ରୋଜା ଧୀରେ ଧୀରେ କହିଲା, "ସେ ପୁରସ୍କାର କଥା ମୁଁ ଭାବୁ ନାହିଁ । ଯଦି ମୋର କାର୍ଯ୍ୟଦ୍ୱାରା ଆପଣ ଜୀବନର ଏହି ଶେଷ ମୁହୂର୍ତ୍ତରେ ଟିକିଏ ସାନ୍ତ୍ୱନା ପାଇପାରିବେ, ତେବେ ମୁଁ ଆନନ୍ଦରେ ସେହି କାର୍ଯ୍ୟର ଭାର ନେବି । ମୁଁ ଭାବୁଛି ଆପଣ ମୋତେ କିଛି ଅନ୍ୟାୟ କାର୍ଯ୍ୟ କରିବାକୁ ଦେବେନାହିଁ ।''

"ନା-ନା, କୌଣସି ପ୍ରକାର ଅନ୍ୟାୟ ନୁହେଁ । ଶୁଣ ତାହାହେଲେ । ହାର୍ଲେମ ସହରର ନାମ ଶୁଣିଛ ?"

ହଁ ।"

''ବେଶ୍, ସେଠାରେ ପୁଷ୍ପ ପ୍ରଦର୍ଶନୀ ସମିତିର ସଭାପତି ଦୁଇବର୍ଷ ତଳେ ଗୋଟିଏ ପୁରସ୍କାର ଘୋଷଣା କରିଛନ୍ତି—ଯଦି କୌଣସି ବ୍ୟକ୍ତି ଖାଣ୍ଟି ଗାଢ଼ କଳା ରଙ୍ଗର ଟ୍ୟୁଲିପ ଫୁଲ ଉତ୍ପନ୍ନ କରିପାରିବ, ତେବେ ସେଠାର ପ୍ରଦର୍ଶନୀ ସମିତି ତାଙ୍କୁ ଲକ୍ଷେ ଗିଲ୍‌ଡ଼ର୍ ପୁରସ୍କାର ଦେବେ । ମୋର ବିଶ୍ୱାସ ବହୁଦିନର ଅକ୍ଳାନ୍ତ ସାଧନା ଫଳରେ ମୁଁ କଳା ଟ୍ୟୁଲିପ୍‌ର ପୁଆ ସୃଷ୍ଟି କରିପାରିଛି । ପୁଆ ଲଗାଇବାବେଳ ହୋଇନାହିଁ, ଏପରି ସମୟରେ ଦେଖୁଛ ମୋ ଉପରକୁ ମରଣ ମାଡ଼ିଆସିଲା । ଲକ୍ଷେ ଗିଲ୍‌ଡ଼ର୍ ପୁରସ୍କାରଟି ପାଇପାରିଲି ନାହିଁ ବୋଲି ଦୁଃଖ କରୁନାହିଁ; ଏତେ ଚେଷ୍ଟା, ଏତେ ସାଧନା ବ୍ୟର୍ଥହୋଇଗଲା—ଏହିତକ ହିଁ ଜୀବନର ଏ ଶେଷ ମୁହୂର୍ତ୍ତରେ ମୋତେ ବିଷଣ୍ଣ କରି ରଖିଛି । କିନ୍ତୁ ରୋଜା, ଯଦି ତୁମେ ମୋର ସେହି ଚେଷ୍ଟାକୁ ସାଫଲ୍ୟ ମଣ୍ଡିତ କରିବାର ଭାର ନିଅନ୍ତ, ତେବେ ମୁଁ ଅନ୍ତତଃ ନିଶ୍ଚିନ୍ତ ହୋଇ ମରନ୍ତି ।"

ଆପଣଙ୍କୁ ଶାନ୍ତି ଦେବାଲାଗି ମୁଁ ଯେକୌଣସି ଭାର ଗ୍ରହଣ କରିବାକୁ ପ୍ରସ୍ତୁତ; କିନ୍ତୁ ଲକ୍ଷେ ଗିଲ୍‌ଡ଼ର୍‌ର ପୁରସ୍କାର ପାଇବାକୁ କ'ଣ ମୁଁ ଯୋଗ୍ୟ ?"

"ରୋଜା, ମୁଁ ଗୋଟିଏ ହତଭାଗା । ମୋର ବାପ-ମାଆ ଇହଧାମରେ

ନାହାନ୍ତି, ଭାଇଭଉଣୀ ବୋଲି କେହିନାହାଁନ୍ତି । ଜୀବନର ଏହି ଶେଷ ମୁହୂର୍ତ୍ତରେ ତୁମେ ହିଁ ମୋର ସବୁ । ତୁମର ରୂପ ଓ ତୁମର ଗୁଣରେ ମୁଁ ବିମୁଗ୍ଧ ରୋଜା ! ନିଅ, ମୋର ସାଧନାର ଫଳ ଭୋଗକରିବାକୁ ତୁମେ ହିଁ ଯୋଗ୍ୟା । ଏ ପୁରସ୍କାରଟା ତୁମର ବିବାହ ଯୌତୁକ ହେବ; ତୁମେ ଶାନ୍ତିରେ, ସୁଖରେ ଜୀବନ କାଟିବ ।”

“କିନ୍ତୁ ଡାକ୍ତରବାବୁ, ଟ୍ୟୁଲିପ ଫୁଲ ଫୁଟାଇବା ପରି ଜ୍ଞାନ ବା ଅନୁଭୂତି ତ ମୋର ନାହିଁ ।”

“ଶୁଣ, ବେଶି କିଛି କରିବାକୁ ପଡ଼ିବ ନାହିଁ ।” କହି କର୍ଣ୍ଣେଲିୟସ୍ ଲୁଚାଇ ରଖିଥିବା ପଥରସନ୍ଧିରୁ ପୁଆ ପୁଡ଼ିଆଟି ନେଇ ଆସିଲେ । ରୋଜା ହାତରେ ପୁଡ଼ିଆଟି ଧରାଇଦେଇ ସେ କହିଲେ, “ଧର, ଏହି ପୁଡ଼ିଆରେ ପୁଆ ତିନୋଟି ଅଛି । ଯତ୍ନରେ ରଖିବ । ଏ ସବୁ କି ଜିନିଷ, ତାହା ଜାଣିବାକୁ ପାଇଲେ ଅନ୍ୟମାନେ ତୁମଠାରୁ ଚୋରାଇ କିମ୍ବା ଝାମ୍ପି ନେଇଯାଇପାରନ୍ତି, ତେଣୁ ଲୁଚାଇ ରଖିବାକୁ ପଡ଼ିବ । ଏହାକୁ ପୋତିବା ସମସ୍ତ ହୋଇନାହିଁ । ଆଉରି ସାତମାସ ପରେ ପୋତାଯିବ । ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ଏଗୁଡ଼ିକୁ କିଛି ସମୟ ଖରାରେ ରଖାଯିବା ଦରକାର । ଯେତେବେଳେ ଗଛ ଲଗାଇବ, ସେତେବେଳେ ଗୋଟିଏ କୁଣ୍ଡରେ ଗୋଟିଏ ପୁଆ ଲଗାଇବ । ଫୁଲକୁଣ୍ଡଟା ପ୍ରଦର୍ଶନୀକୁ ପଠାଯିବ । ହଁ ଫୁଲ ଫୁଟିଗଲେ ପ୍ରଦର୍ଶନୀ ସମିତିର ସଭାପତିଙ୍କୁ ଚିଠି ଲେଖି ଜଣାଇଦେବ ଯେ, ତୁମେ କଳା ଟ୍ୟୁଲିପ୍ ଫୁଲ···”

“ନା ନା, ମୁଁ ଆବିଷ୍କାର କରିଛି ବୋଲି ଲେଖିପାରିବିନାହିଁ । କଳା ଫୁଲ ଆପଣଙ୍କର ଆବିଷ୍କାର । ପୁଣି ଫୁଲଗଛ ସମ୍ବନ୍ଧରେ ମୋର କୌଣସି ଅଭିଜ୍ଞତା ନାହିଁ; ମୁଁ କଳା ଟ୍ୟୁଲିପ୍ ଫୁଟାଇପାରିଛି ବୋଲି ଯେତେ କହିଲେ ବି ଲୋକେ ମୋ କଥାରେ ବିଶ୍ୱାସ ଯିବେନାହିଁ ।”

“ଧନ୍ୟବାଦ । ଠିକ୍ କଥା କହିଛ । ମୁଁ ଏ ଫୁଲର ଆବିଷ୍କାରକ ବୋଲି କହିପାରି । ଫୁଲଟିର ନାମ ଦେବ “ରୋଜାବାର୍ଲି ଟ୍ୟୁଲିପ୍ ।” ତାହାହେଲେ ତୁମର ନାମ ମୋର ନାମ ଚିରଦିନ ଲାଗି ଏକାଠି ହୋଇ ରହିଥିବ । ତୁମେ

ଯଦି କାଗଜକଲମ ଦେଇପାରନ୍ତ, ତାହାହେଲେ ମୁଁ ଗୋଟାଏ ଉଇଲ୍ ଲେଖିଦିଅନ୍ତ ଯେ ପୁରସ୍କାରଟା ତୁମକୁ ଦିଆଯାଉ ।”

ରେଜା ଚତୁରା, ବୁଦ୍ଧିମତୀ; କିନ୍ତୁ ତାର ନିଷ୍ଠୁର ପିତା ତାକୁ କୌଣସି ଦିନ ଲେଖାପଢ଼ା ଶିଖାଇବାର ବ୍ୟବସ୍ଥା କରିନଥିଲେ । ଫଳରେ ସେ କାଗଜକଲମର ଧାରଧାରେନା । ତଥାପି ତାର ମନେପଡ଼ିଗଲା ଡ-ଉଇଟ୍ ବୁଇଥିଇ ତାର ଉପକାରରେ ସନ୍ତୁଷ୍ଟ ହୋଇ ତାକୁ ଗୋଟିଏ ବାଇବେଲ୍ ପୁରସ୍କାର ଦେଇଥିଲେ । ସେଥିରେ ସାଦା ପୃଷ୍ଠା ରହିଛି, ଖଣ୍ଡେ ପେନ୍‌ସିଲ ମଧ୍ୟ ଲଗିଛି ସେ ବହି ସହିତ । ରେଜା ସେହି ବହିଖଣ୍ଡିକ କର୍ଣ୍ଣେଲିୟସ୍‌ଙ୍କ ହାତକୁ ବଢ଼ାଇଦେଲା । ସେହି ବହିର ପ୍ରଥମ ସାଦା ପୃଷ୍ଠାଟି ଚିରି ସେଥିରେ କର୍ଣ୍ଣେଲିୟସ୍ ଡ-ଉଇଟ୍ ବାର୍ଲିଙ୍କୁ ଚିଠି ଲେଖିଥିଲେ । ସେ ଚିଠିରେ ବର୍ତ୍ତମାନ ଟ୍ୟୁଲିପ୍ ପୁଆ ବନ୍ଧାଯାଇଛି । ହଁଏତ ଭାଗ୍ୟର କି ବଡ଼ମଜା ! କର୍ଣ୍ଣେଲିୟସ୍ ସେ କଥା ମୋଟେ ଜାଣନ୍ତିନାହିଁ । ସେ ବହିର ଶେଷ ସାଦା ପୃଷ୍ଠାଟି ଚିରନେଇ ସେଥିରେ ନିଜର ସଂକ୍ଷିପ୍ତ ଉଇଲ୍ ଲେଖିବସିଲେ—

“ମରଣ ନିକଟ ହୋଇଆସିଲା ଜାଣି ମୁଁ ଡଟ୍‌ନିବାସୀ ଡାକ୍ତର କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି, ମୋର ଦୀର୍ଘଦିନର ଗବେଷଣାର ଫଳ ଏହି ଟ୍ୟୁଲିପ୍ ପୁଆ ତିନୋଟି ବୁଇଟେନ୍ ହଫ୍ ବନ୍ଦିଶାଳାର ରକ୍ଷକ ଗ୍ରାଇଫସ୍‌ଙ୍କର କନ୍ୟା କୁମାରୀ ରେଜା ଗ୍ରାଇଫସ୍‌ଙ୍କ ହାତରେ ଅର୍ପଣ କରୁଛି । ମୋର ଦୃଢ଼ ବିଶ୍ୱାସ, ଆଗାମୀ ମେ’ମାସରେ ଏହି ଟ୍ୟୁଲିପ୍ ପୁଆରୁ ଗଛ ହୋଇ ଗାଢ଼ କଳା ରଙ୍ଗର ଟ୍ୟୁଲିପ୍ ଫୁଲ ଫୁଟିବ; ଏପରି ଗାଢ଼ କଳାରଙ୍ଗର ଟ୍ୟୁଲିପ୍ ଲାଗି ହାର୍ଲେମ ପୁଷ୍ପ ପ୍ରଦର୍ଶନୀ ପକ୍ଷରୁ ଏକଲକ୍ଷ ଗିଲଡ଼ର ପୁରସ୍କାର ଘୋଷଣା କରାଯାଇଛି । ପ୍ରଦର୍ଶନୀ ସମିତିକୁ ମୋର ଅନୁରୋଧ, ସେମାନେ ଉକ୍ତ ପୁରସ୍କାରଲବ୍ଧ ସମସ୍ତ ଧନ କୁମାରୀ ରେଜାଙ୍କୁ ପ୍ରଦାନ କରିବେ । ମୋର କାମନା ଏହିଯେ ଉକ୍ତ କଳା ଟ୍ୟୁଲିପ୍‌ର ନାମ “ରେଜା ବାର୍ଲି ଟ୍ୟୁଲିପ୍” ହେବ ଏବଂ କୁମାରୀ ରେଜା ଯଦି ତାଙ୍କୁ ହୃଦୟ ଦେଇ ଭଲପାଉଥିବା ମୋର ବୟସର କୌଣସି ସୁସ୍ଥ ସୁନ୍ଦର ଯୁବକଙ୍କୁ ବିବାହ କରିବାକୁ ଇଚ୍ଛା

ପ୍ରକାଶକରନ୍ତି, ତେବେ ପୁରସ୍କାର-ଧନ ତାଙ୍କୁ ବିବାହଯୌତୁକ ରୂପରେ ପ୍ରଦାନ କରାଯିବ । । ଇତି ।

୨୩ ଅଗଷ୍ଟ ୧୬୭୨,

ସମୟ ଦିନ ଏଗାରଟା — କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି

ବୁଇଟେନ୍ ହଫ୍ ବନ୍ଦଶାଳା ।

ଉଇଲ୍ଟି ଲେଖିସାରିବା ପରେ କାଗଜଟିକୁ ରୋଜା ହାତକୁ ବଢ଼ାଇଦେଇ କର୍ଣ୍ଣେଲିୟସ୍ କହିଲେ, "ପଢ଼ି ଦେଖ ।"

ରୋଜା ଦୁଃଖର ସହିତ କହିଲା, "ମୁଁ ତ ପଢ଼ିଜାଣେନି ।"

"ଅଚ୍ଛା ମୁଁ ପଢ଼ୁଛି, ଶୁଣ," କହି କର୍ଣ୍ଣେଲିୟସ ଉଇଲ୍ଟି ପଢ଼ିବସିଲେ । ଶେଷରେ ସେ ରୋଜାକୁ ପଚାରିଲେ, "କଣ ତୁମେ ମୋ ସହିତ ଏକମତ ତ?"

"ନା ଡାକ୍ତରବାବୁ ମୁଁ ସବୁ କରିବି, କିନ୍ତୁ ସେ ପୁରସ୍କାର-ଧନ ନେଇପାରିବି ନାହିଁ ; ମୁଁ ଆଉ କାହାରିକି ଭଲ ପାଇପାରିବି ନାହିଁ, ମୁଁ ଆଉ କୌଣସି ଦିନ ବିବାହ କରିବିନାହିଁ ।"

"ଏ କଣ କହୁଛ ରୋଜା ?"

"ଏଇଆ ହିଁ ମୋର ଅନ୍ତରର କଥା" କହୁ କହୁ ରୋଜାର ଦୁଇ ଆଖି ଲୁହରେ ଉଛୁଳି ପଡ଼ିଲା । ଠିକ୍ ସେତିକିବେଳକୁ ବନ୍ଦଶାଳାର ଶିଡ଼ିରେ ଶୁଣାଗଲା ପ୍ରହରୀମାନଙ୍କର ପଦଶବ୍ଦ । "ହାୟ, ହାୟ...ଭଗବାନ, ସେମାନେ ଆସିଗଲେ ! !" କହି ରୋଜା କାନ୍ଦିଉଠିଲା ।

"ବିଦାୟ ରୋଜା, ବିଦାୟ । ମୋର ବିଶ୍ୱାସ ତୁମେ ମୋର କଳା ଟ୍ୟୁଲିପ୍ ଫୁଟାଇବ, ମୋର କାମନା ପୂର୍ଣ୍ଣ କରିବ ।"

ସହକାରୀ ଜେଲର୍ ଆସି ପ୍ରହରୀମାନେ ଆସୁଥିବା ବିଷୟ ଜଣାଇ କୋଠରିର ଦ୍ୱାର ବନ୍ଦ କରିଦେଲେ । ରୋଜା ବାହାରେ ଠିଆହୋଇ ମୁହଁ ଲୁଚାଇ କାନ୍ଦିବାକୁ ଲାଗିଲା । ଅଳ୍ପକ୍ଷଣ ମଧ୍ୟରେ କେତେକ ପ୍ରହରୀ ଓ ଜଣେ ମାଜିଷ୍ଟ୍ରେଟ୍ ଆସି ପହଞ୍ଚିଗଲେ । କୋଠରିର ଦ୍ୱାର ଖୋଲିଯିବା ମାତ୍ରେ କର୍ଣ୍ଣେଲିୟସ୍ କହିଉଠିଲେ, "ଚାଲନ୍ତୁ ମହାଶୟ, ମୁଁ ପ୍ରସ୍ତୁତ ।"

ଏ ନିର୍ଭୀକତା ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ବାରଟା ବାଜିବାକୁ ଅଳ୍ପ ସମୟ ବାକି ଥାଏ । ପ୍ରହରୀମାନେ କର୍ଣ୍ଣେଲ୍‌ସ୍ମିଥ୍‌ଙ୍କୁ ନେଇ ବଧଭୂମିକୁ ଚାଲିଲେ । ଗଲାବେଳେ କର୍ଣ୍ଣେଲ୍‌ସ୍ମିଥ୍ ଦେଖିଲେ ରୋଜା ମୂର୍ଚ୍ଛିତା ଅବସ୍ଥାରେ ଗୋଟିଏ ଖୁମ୍ବକୁ ଆଉଜି ଠିଆହୋଇଛି; ହାତରେ ତାର ସେହି କାଗଜ ପୁଡ଼ିଆଟି । ହାୟରେ ଭାଗ୍ୟ ! ଯୁବକ କର୍ଣ୍ଣେଲ୍‌ସ୍ମିଥ୍ ଯଦି ସେ ଖଣ୍ଡିକ କି କାଗଜ ତାହା ଜାଣିଥାଆନ୍ତେ, ତେବେ ବିପର୍ଯ୍ୟୟରୁ ସେ କେତେ ସହଜରେ ମୁକ୍ତ ହୋଇ ନ ଯାଆନ୍ତେ ? ସେ ଯେ ତଥାକଥିତ ରାଷ୍ଟ୍ରଦ୍ରୋହ ବ୍ୟାପାରରେ ମୋଟେ ସଂପୃକ୍ତ ନୁହନ୍ତି, ସେହି କାଗଜଖଣ୍ଡିକ ତାହା ସୁନ୍ଦର ପ୍ରମାଣ କରିପାରନ୍ତା; କିନ୍ତୁ ଯାହା ଭବିତବ୍ୟ ତାକୁ କେହି ଅନ୍ୟଥା କରିନପାରେ ।

ବ୍ରାଇଟେନ୍ ହିଲ୍ ବନ୍ଧଶାଳାର ଫାଶିପଡ଼ିଆରେ ସେଦିନ ଭୀଷଣ ଭିଡ଼ । ପଡ଼ିଆର ଚାରିପାଖରେ ଘେରି ରହିଥାନ୍ତି ରାଜା ଉଇଲିୟମ୍‌ଙ୍କର ଭଡ଼ାଟିଆ ସୈନ୍ୟ । ଜନତା ୨୦ ତାରିଖର ଜନତା ପରି ଉଚ୍ଛୃଙ୍ଖଳ ନୁହେଁ । ଆଜିର ଅପରାଧୀକୁ ପ୍ରାଣଦଣ୍ଡ ଦିଆଯାଇଛି; ତେଣୁ ଜନତା ବ୍ୟସ୍ତ ହେବା ଆବଶ୍ୟକ ହେଉନାହିଁ, କିନ୍ତୁ ଏହି ସଂଯତ ଜନତା ଭିତରେ ବି କେତେ-ଜଣଙ୍କ ମୁହଁରେ ଦେଖାଯାଉଥିଲା ଅସନ୍ତୋଷର ଛାୟା । ସେମାନେ ରାଜା ଉଇଲିୟମ୍‌ଙ୍କର ଭଡ଼ାଟିଆ ସୈନ୍ୟଙ୍କୁ ଦେଖି ନିଜ ନିଜ ଭିତରେ ଆଲୋଚନା ଆରମ୍ଭ କରିଦେଇଥିଲେ ଯେ, ବୋଧହୁଏ ଦେଶରୁ ଗଣତନ୍ତ୍ରକୁ ବିଦାୟ ଦେବା ଲାଗି ଏକ ଷଡ଼ଯନ୍ତ୍ର ଚାଲିଛି । ଏତିକିବେଳେ ପ୍ରହରୀମାନେ କର୍ଣ୍ଣେଲ୍‌ସ୍ମିଥ୍‌ଙ୍କୁ ନେଇ ମଞ୍ଚ ଉପରକୁ ଚାଲିଆସିଲେ । ଜନତା ଭିତରେ ଗୋଟାଏ ହାହାକାର ଖେଳିଗଲା ।

କାଠପଟାରେ ତିଆରି ଏକ ଉଚ୍ଚ ମଞ୍ଚ ଉପରେ ଗୋଟାଏ ଲମ୍ବା ଖଣ୍ଡା ଧରି ଜଣେ ବିରାଟକାୟ ଲୋକ ଠିଆହୋଇଥାଏ । ସେ ହେଉଛି ଘାତକ । ଘାତକ ଆଗରେ ଗୋଟିଏ କାଠ ଗଣ୍ଡି । କର୍ଣ୍ଣେଲ୍‌ସ୍ମିଥ୍‌ଙ୍କୁ ନେଇ କାଠଗଣ୍ଡି ପାଖରେ ଠିଆକରାଇ ଜଣେ ମାଜିଷ୍ଟ୍ରେଟ୍ ବନ୍ଦିର ପରିଚୟ, ଅପରାଧ ଓ ଅଦାଲତଙ୍କର ରାୟ ପଢ଼ି ଶୁଣାଇଦେଲେ । ଜନତା ଭିତରୁ

କେତେଜଣ, 'ଜୟ ମହାରାଜା ଉଇଲିୟମଙ୍କର ଜୟ !' ବୋଲି ଧ୍ୱନି କଲେ । ଅନ୍ୟମାନେ ରହିରହିଲେ ବିସ୍ମିତ ହୋଇ । କର୍ଣ୍ଣେଲିୟସଙ୍କୁ କାଠଗଣ୍ଡି ଉପରେ ମୁଣ୍ଡ ରଖି ବସିବାକୁ ଆଦେଶ ଦିଆଗଲା । ସ୍ୱଇଆଡ଼କୁ ଥରେ ଆଖି ବୁଲାଇ ନେଇ କର୍ଣ୍ଣେଲିୟସ୍ ସେ ପାଖରେ ବସିପଡ଼ିଲେ । ସେହି ବିରାଟ ଜନତା ଭିତରୁ ସେ କାହାରିକୁ ଚିହ୍ନନ୍ତି ନାହିଁ; କିନ୍ତୁ ସେ ଯଦି ଟିକିଏ ଘାତକ ଆଡ଼କୁ ଚାହିଁଥାଆନ୍ତେ, ତେବେ ଗୋଟାଏ ପରିଚିତ ମୂର୍ତ୍ତି ଦେଖିପାରିଥାନ୍ତେ । ସେ ଭଲଭାବରେ ଚିହ୍ନି ନଥିଲେ ବି ବକ୍‌ସଟେଲକୁ ନିଜ ଘରି ବଜାରରେ ନିଶ୍ଚୟ କେତେଥର ଦେଖିଥିବେ । ସେହି ବକ୍‌ସଟେଲ୍ ଘାତକ ପାଖରେ ଠିଆ ହୋଇ ତାକୁ କଣ ସବୁ ଇଙ୍ଗିତ ଦେଉଥିଲା । କର୍ଣ୍ଣେଲିୟସଙ୍କୁ ବନ୍ଦୀକରି ରାଜଧାନୀ ନିଆସିବା ପରେ ବକ୍‌ସଟେଲ ତ ଗ୍ରେରଙ୍କ ପରି ପାଠଅଧିଆ କର୍ଣ୍ଣେଲିୟସ୍‌ଙ୍କର ବଗିଚା ଓ ଗବେଷଣା କୋଠରି ଖୋଜି ଖୋଜି କଳା ଟ୍ୟୁଲିପ୍ କନ୍ଦା ପାଇଲାନାହିଁ । ନିଷ୍ଫଳ ହୋଇ ଘରକୁ ଫେରିଆସିଲା ସତ, ସେ ରାତିରେ କିନ୍ତୁ ତାକୁ ଆଉ ନିଦ ହେଲାନାହିଁ । ସେ ଚିନ୍ତା କରି ବସିଲା, ଯେତେବେଳେ କର୍ଣ୍ଣେଲିୟସର ଘରେ ବା ବଗିଚାରେ କେଉଁଠି ହେଲେ ଟ୍ୟୁଲିପ୍ କନ୍ଦା ନାହିଁ, ସେ ନିଶ୍ଚୟ କନ୍ଦାଗୁଡ଼ିକ ଆଉ କାହାକୁ ଦେଇଯାଇଛୁ; କିନ୍ତୁ ରାଷ୍ଟ୍ରଦ୍ରୋହୀ ବନ୍ଦୀଠାରୁ କୌଣସି ଜିନିଷ ତ କେହି କେବେ ରଖିବ ନାହିଁ, ନିଶ୍ଚୟ ସେ କନ୍ଦା ଓ ପୁଆ ନିଜ ପୋଷାକ ଭିତରେ ଲୁଚାଇ ରଖିଛୁ । ବନ୍ଦଶାଳାରେ କାହାକୁ ହାତକରି ଯଦି ତା'ର ପୋଷାକପତ୍ର ତଲାସ କରାଯାଇପାରନ୍ତା, ତେବେ କନ୍ଦାଗୁଡ଼ାକ ନିଶ୍ଚୟ ମିଳିଯାଆନ୍ତା । ଦରକାର ହେଲେ କିଛି ଟଙ୍କାପଇସା ଖର୍ଚ୍ଚକରି ଏ କାମଟା ନିଶ୍ଚୟ କରିବାକୁ ପଡ଼ିବ ଭାବି ରାତିପାହାନ୍ତିଆ ନହେଉଣୁ ବକ୍‌ସଟେଲ୍ ରାଜଧାନୀ ହେଗ୍ ପଥରେ ବାହାରିପଡ଼ିଲା । ବୁଇଟେନ୍ ହଫ୍ ଜେଲରେ ପହଞ୍ଚି ଦୁରାତ୍ମା ଗ୍ରାଇଫସ୍‌କୁ ଖାନାପିନା ଦେଇ ଯେତେବେଳେ ସେ ପ୍ରସ୍ତାବଟା ବାଢ଼ିଲା, ସେତେବେଳେ ଗ୍ରାଇଫସ୍ ଟିକିଏ ଶଙ୍କା ପ୍ରକାଶ କଲା । ବକସ୍‌ଟେଲ ତାକୁ ଟ୍ୟୁଲିପ୍ କନ୍ଦା କଥା କହି ନଥାଏ । ତେଣୁ ଗ୍ରାଇଫସ୍ ଲୋକଟାର ଉଦ୍ଦେଶ୍ୟ ବୁଝିପାରିଲା ନାହିଁ । ସେ ଧରାଛୁଆଁ

ନଦେବାରୁ ବକ୍‌ସଟେଲ୍ କିଛି ସୁନାଗହଣାର ପ୍ରଲୋଭନ ଦେଖାଇ ରୋଜାକୁ ହାତ କରିବାକୁ ଚେଷ୍ଟା କଲା; କିନ୍ତୁ ତା'ପରି ଝିଅ ଏ ଦୁଷ୍ଟଲୋକ କଥାରେ କାହିଁକି ବା କାନ ଦିଅନ୍ତା। ଦିନତମାମ ଚେଷ୍ଟାକରି ବକ୍‌ସଟେଲ୍ ବିଫଳ ହେବା ବେଳକୁ ଲୋକଙ୍କ ମୁହଁରୁ ଶୁଣିବାକୁ ପାଇଲା ଯେ କର୍ଣ୍ଣେଲିୟସ୍‌ଙ୍କୁ ବିଗ୍ଭରକମାନେ ନିଶ୍ଚୟ ପ୍ରାଣଦଣ୍ଡ ଦେବେ। ସତକୁ ସତ ତାହାହିଁ ଘଟିଲା। ସୁତରାଂ ବକ୍‌ସଟେଲ୍ ଦୌଡ଼ିଲା ଘାତକ ପାଖକୁ। ଘାତକ ସହିତ ଚୁକ୍ତି ହେଲା ଯେ, କର୍ଣ୍ଣେଲିୟସ୍‌ଙ୍କୁ ନିହତ କରିବାପରେ ଘାତକ ତାଙ୍କର ପୋଷାକପରିଚ୍ଛଦ ବକ୍‌ସଟେଲକୁ ଏକେଶହ ଗିଲ୍‌ଡ଼ରରେ ବିକିଦେବ। ପାପୀର ମନ ତ ସବୁବେଳେ ସନ୍ଦିଗ୍ଧ। ତେଣୁ ଏତେ ଚୁକ୍ତି କରି ବି ସେ ବଧମଞ୍ଚପାଖରେ ବ୍ୟସ୍ତହୋଇ ଘାତକକୁ ଟଙ୍କାମୁଣି ଦେଖାଉଥାଏ।

କର୍ଣ୍ଣେଲିୟସ ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ କାଠଗଣ୍ଡି ଉପରେ ମୁଣ୍ଡ ଲଗାଇଦେଲେ। ସେ ଆଖି ବୁଜିବାମାତ୍ରେ ଘାତକର ଖଣ୍ଡା ସାଁକିନା ଉପରକୁ ଉଠିଗଲା। କର୍ଣ୍ଣେଲିୟସ୍‌ଙ୍କ ମନଶ୍ଚକ୍ଷୁରେ ଦେଖାଗଲା ଶତ ଶତ ଗାଢ଼ କଳା ଟ୍ୟୁଲିପ୍ ଏବଂ ପ୍ରତ୍ୟେକଟି ଫୁଲ ପାଖରେ ମୃଦୁ ମଧୁର ହସ ଫୁଟାଇ ଦେଖାଦେଲା ରୋଜାର ଲାବଣ୍ୟମୟୀ ମୁଖପଦ୍ମ। ସେ ଅପରୂପ ଶୋଭାସମ୍ପଦ କର୍ଣ୍ଣେଲିୟସ୍‌ଙ୍କର ତରୁଣ ହୃଦୟକୁ ଏକ ଅବ୍ୟକ୍ତ ଆନନ୍ଦରେ ପୂର୍ଣ୍ଣ କରିଦେଲା। ନିଜର ସ୍ଥିତି ବିସ୍ମୃତ ହୋଇ ସେ ଖେଳି ବୁଲିଲେ ତାଙ୍କର ପ୍ରିୟ ଟ୍ୟୁଲିପ୍ ଓ ପ୍ରିୟା ରୋଜା ସହିତ। କିଛି ସମୟ ବିତିଗଲା, କର୍ଣ୍ଣେଲିୟସ୍ ଭାବିଲେ ଘାତକର ଖଣ୍ଡାରେ କେତେବେଳୁ ତାଙ୍କ ମୁଣ୍ଡଟା ଅଲଗା ହୋଇଯିବଣି। ତଥାପି ଏ ମଧୁର ଦୃଶ୍ୟ ସେ କିପରି ଦେଖୁଛନ୍ତି? ତା'ହେଲେ ଏହାକୁ ହିଁ କହନ୍ତି ମୃତ୍ୟୁ? ନା ବୋଧହୁଏ। ସେ ଆଖି ଖୋଲିଲେ। ଉପରକୁ ଗ୍ଭହିଁଲେ, ଆକାଶର କୋମଳ ନୀଳିମାରେ ସେ ବିମୁଗ୍ଧ ହୋଇଗଲେ। ଏ କ'ଣ ହେଲା? ଭାବୁ ଭାବୁ କାହାର କୋମଳ କରସ୍ପର୍ଶରେ ସେ ଚମକି ଉଠିଲେ। କେହି ଜଣେ ଭଦ୍ର କଣ୍ଠରେ କହିଲେ, "ଉଠନ୍ତୁ।"

କର୍ଣ୍ଣେଲିୟସ୍ ଦେଖିଲେ ଆଉ ଜଣେ ମାଜିଷ୍ଟ୍ରେଟ ନୂଆ ଏକ କାଗଜ ଧରି

ତାଙ୍କ ଆଗରେ ପଢୁଛନ୍ତି—"ହଲଣ୍ଡର ଦସ୍ତାଡ୍ଟ ଷ୍ଟାଡ୍ ହୋଲ୍ଡ଼ର ମହାରାଜା ଉଇଲିୟମ ଅପରାଧୀର ତରୁଣ ବୟସ ଓ ଅତୀତର ସାଧୁତାରେ ମୁଗ୍ଧ ହୋଇ ତାଙ୍କୁ ପ୍ରାଣଦଣ୍ଡରୁ ଅବ୍ୟାହତ ଦେଇ ଯାବଜ୍ଜୀବନ କାରାଦଣ୍ଡ ଦେଇଛନ୍ତି ।" ଏ ନୂଆ ଆଦେଶ ପଢ଼ାସିବାମାତ୍ରେ ଜନତା ଭିତରୁ ବିକ୍ଷୋଭର ସ୍ୱର ଶୁଭିଲା । ମାଜିଷ୍ଟ୍ରେଟ୍ ଜଣକ ଅବିଳମ୍ବେ କର୍ଣ୍ଣେଲିୟସ୍‌ଙ୍କୁ ନେଇ ଗୋଟିଏ ଗାଡ଼ିରେ ବସାଇ ଗାଡ଼ି ଛାଡ଼ିଦେଲେ । ସେତେବେଳେ ବକ୍‌ସଟେଲ୍‌ର ଅବସ୍ଥା ଦେଖିବା କଥା । ସେ ଗୁଡ଼ାଏ ଅର୍ଥହୀନ ପାଟିତୁଣ୍ଡ କରି ଗାଡ଼ି ପଛରେ ଦୌଡ଼ିଲା । ଉଇଲିୟମ୍‌ଙ୍କ ସମର୍ଥକମାନେ ତାଙ୍କୁ ଭୁଲ ବୁଝି ମାରିଗୋଡ଼ାଇଲେ । ଦୌଡ଼ୁ ଦୌଡ଼ୁ ଝୁଣ୍ଟିପଡ଼ିଲା ଯେ ଗୋଡ଼ରୁ ଚେତନେ ହଜିଗଲା । ଲୋକଙ୍କ ଦଳାଚକଟା ଖାଇ ସେ ନିଜ ଘରକୁ ଫେରିବା ବେଳକୁ ବିଚରା ଦରମରା ହୋଇଗଲାଣି ।

## ଛଅ

ମହାରାଜା ଉଇଲିୟମଙ୍କ ବୟସ କମ୍ ହେଲେ ବି ରାଜନୀତିରେ ସେ ଥିଲେ ଧୁରନ୍ଧର । ସେ ଦେଖିଲେ ଡ-ଉଇଟ ଦୁଇ ଭାଇଙ୍କୁ ନିହତ କରିବାରେ ତାଙ୍କର ଯେଉଁ ଲାଭ ହୋଇଥିଲା, ଅଖ୍ୟାତ ଅଜ୍ଞାନ ଭ୍ୟାନ୍‌ବାର୍ଲିଙ୍କୁ ହତ୍ୟା କରି ତା'ର ଶତାଂଶ ବି ଲାଭ ମିଳିବ ନାହିଁ; ତାଙ୍କ ସହିତ ଉଇଲିୟମ୍‌ଙ୍କର ପ୍ରତିଷ୍ଠାର କୌଣସି ସମ୍ପର୍କ ନାହିଁ । ପରନ୍ତୁ ଏହିପରି ହତ୍ୟାକରି ବସିଲେ ୟୁରୋପରେ ବଦ୍‌ନାମ ପାଇବାର ସମ୍ଭାବନା ରହିଛି । ତେଣୁ ସେ କ୍ଷମାର ଅବତାର ସାଜି ଭ୍ୟାନ୍ ବାର୍ଲିଙ୍କର ପ୍ରାଣଦଣ୍ଡ ମୁକ୍ତକରି ତାଙ୍କୁ ଯାବଜ୍ଜୀବନ କାରାଦଣ୍ଡରେ ଦଣ୍ଡିତ କରିଥିଲେ; କିନ୍ତୁ ଏ ପ୍ରକାର ବନ୍ଦୀକୁ ରାଜଧାନୀ ହେଗ୍‌ରେ ରଖିବା ଅତ୍ୟଧିକ ବ୍ୟୟସାପେକ୍ଷ ହୋଇଥିବାରୁ କର୍ଣ୍ଣେଲିୟସ୍‌ଙ୍କୁ ବଧ ମଞ୍ଚରୁ ହିଁ ଲଭେଷ୍ଟିନ୍ ଦୁର୍ଗକୁ ସ୍ଥାନାନ୍ତରିତ କରାଗଲା । ବଞ୍ଚିବାକୁ ମିଳିଲା ଭାବି କର୍ଣ୍ଣେଲିୟସ୍‌ଙ୍କ ମନରେ ଗୋଟିଏ କ୍ଷୀଣ ଆଶାର ସଞ୍ଚାର ହୋଇଥିଲା ଯେ ରୋଜାର ସହାୟତାରେ ସେ କଳା ଟ୍ୟୁଲିପ୍ ଉତ୍ପନ୍ନ

କରିବାରେ ସକ୍ଷମ ହୋଇପାରିବେ ; କିନ୍ତୁ ହେଗ୍‌ରୁ ଆଣି ତାଙ୍କୁ ଯେତେବେଳେ ଲଭେଷ୍ଟିନ୍‌ରେ ପହଞ୍ଚାଇ ଦିଆଗଲା, ସେତେବେଳେ ସେ ଆଶା ମଉଳିଗଲା ।

ଲଭେଷ୍ଟିନ୍ ଦୁର୍ଗଟି ଡର୍ଟ୍‌ଠାରୁ ଅଳ୍ପ କେତେ କିଲୋମିଟର ଦୂରରେ ଗୋଟିଏ ଛୋଟ ଦ୍ୱୀପ ଉପରେ ଅବସ୍ଥିତ । କର୍ଣ୍ଣେଲିୟସ୍‌ଙ୍କୁ ଦୁର୍ଗର ବନ୍ଦିଶାଳାରେ ଗୋଟିଏ ଛୋଟ ଅଥଚ ସୁନ୍ଦର କୋଠରିରେ ରଖାଗଲା । କୋଠରିର ଝରକା ପାଖରେ ଠିଆହେଲେ ଦୂରରୁ ଡର୍ଟ୍ ସହରର କଳକାରଖାନା ଓ ବଡ଼ ବଡ଼ ଘରର ଧୂଆଁନଳୀ ସବୁ ଦେଖାଯାଏ । କର୍ଣ୍ଣେଲିୟସ୍ ଅଧିକାଂଶ ସମୟରେ ଖୋଲା ଝରକା ଦେଇ ଡର୍ଟ୍‌ଆଡ଼େ ଚାହିଁ ଚାହିଁ ଭାବୁଥାନ୍ତି ତାଙ୍କର ପ୍ରିୟ କଳା ଟ୍ୟୁଲିପ କଥା ଏବଂ ସୁନ୍ଦରୀ ରୋଜାର କଥା । ଏଯାଏଁ ତାଙ୍କ ତରୁଣ ହୃଦୟର ଏକମାତ୍ର ଆକର୍ଷଣ ଥିଲା ଟ୍ୟୁଲିପ୍ ; ବର୍ତ୍ତମାନ ଅନ୍ୟ ଏକ ଆକର୍ଷଣ ହୋଇଛି ରୋଜା ।

ସେ ଆସି ଲଭେଷ୍ଟିନ୍‌ରେ ରହିଛନ୍ତି ବୋଲି ରୋଜା କ'ଣ ଜାଣେ ? ଯଦି ସେ ଜାଣିବ, ତେବେ କଣ ତାଙ୍କୁ ଦେଖିବା ଲାଗି ଆସିବ ? ଆସିବ, ତାଙ୍କ ପ୍ରିୟ କଳା ଟ୍ୟୁଲିପ୍‌ର ସୁସମାଚାର ନେଇ ! ଯଦି ଭଗବାନ ଟିକିଏ ସୁଯୋଗ ଦିଅନ୍ତି, ତେବେ ସେ ନିଶ୍ଚୟ ରୋଜାକୁ ତାଙ୍କର ମନକଥା ଲେଖି ଜଣାଇ ଦିଅନ୍ତେ । ନିଜର ଉଇଲ୍ ଲେଖି ରୋଜାକୁ ଦେବାବେଳେ ପେନ୍‌ସିଲ୍‌ଟା ଫେରାଇବାକୁ ସେ ଭୁଲିଯାଇଥିଲେ । ପେନ୍‌ସିଲଟା ଏପର୍ଯ୍ୟନ୍ତ ପକେଟ୍‌ରେ ପଡ଼ିଛି ; କିନ୍ତୁ କାଗଜ ? ହଁ କାଗଜ ଖଣ୍ଡେ ବି ରହିଛି । ମହାରାଜାଙ୍କର ନୂତନ ଆଦେଶପତ୍ରର ଗୋଟିଏ ନକଲ ତାଙ୍କୁ ଦିଆଯାଇଛି । ସେଥିରେ ବେଶ୍ ବଡ଼ କାଗଜଖଣ୍ଡେ ଅଲେଖା ରହିଛି; କିନ୍ତୁ ରୋଜା ପାଖକୁ ସେ କିପରି ଲେଖାଖଣ୍ଡିକ ପଠାଇବେ ?

ଦିନକର କଥା । କର୍ଣ୍ଣେଲିୟସ ଝରକା ପାଖରେ ଠିଆହୋଇ ବାହାରକୁ ଚାହିଁଛନ୍ତି, ଦେଖିଲେ ଡର୍ଟ୍ ଆଡୁ ଦଳେ ପାରା ଉଡ଼ିଆସି ଲଭେଷ୍ଟିନ ଦୁର୍ଗ ଛାତରେ ବସିଲେ । କର୍ଣ୍ଣେଲିୟସ୍ ମନେ ମନେ ଭାବିଲେ ପାରାଗୁଡ଼ିକ ନିଶ୍ଚୟ ଡର୍ଟ୍ ଫେରିଯିବେ । ଏମାନଙ୍କ ଦେଇ କ'ଣ ଚିଠି ପଠାଇହେବ ନାହିଁ ?

ମେଘଦୂତ ବା ହଂସଦୂତ କଳ୍ପନାର କଥା ହୋଇପାରେ; କିନ୍ତୁ ପାରାଙ୍କ ସୌଭାଗ୍ୟରେ ପୃଥିବୀ ଇତିହାସରେ ବହୁ ଅସମ୍ଭବ କଥା ସମ୍ଭବ ହୋଇପାରୁଛି ।

ସେହି ଦିନଠାରୁ ସେ ନିଜ ପାଇଁ ମିଳୁଥିବା ଖାଦ୍ୟରୁ କିଛି କିଛି ଝରକାଧାରରେ ଥୋଇବାକୁ ଲାଗିଲେ । ସେଗୁଡ଼ାକ ନିଷ୍ଟସ୍ଥ ଘରୁଆ ପାରା । ଖାଦ୍ୟ ରଖାଯାଉଥିବା ଦେଖି ସେମାନେ ଖାଇବାକୁ ଆସିବା ଆରମ୍ଭ କଲେ । ପ୍ରତିଦିନ ଝରକାଧାରରେ ବସି ଖାଦ୍ୟ ଖାଇବା ସେମାନଙ୍କର ଗୋଟିଏ ଅଭ୍ୟାସରେ ପରିଣତ ହୋଇଗଲା, ଶେଷକୁ କର୍ଣ୍ଣେଲ୍ସ୍ପିସ୍ ନିଜ ହାତରେ ଖାଦ୍ୟ ଧରି ସେମାନଙ୍କୁ ଖୁଆଇବାକୁ ଲାଗିଲେ । ଖାଇବାକୁ ଦେଉ ଦେଉ ଦିନେ ଗୋଟାଏ ପାରା ଧରିପକାଇଲେ, କିଛି ଦିନ ପରେ ଆଉ ଗୋଟିଏ ବି ଧରିପକାଇଲେ । ସେଥିରୁ ଗୋଟିଏ ମାଈ, ଆରଟି ଅଣ୍ଡିରା । କର୍ଣ୍ଣେଲ୍ସ୍ପିସ୍ ଜେଲ୍ କୋଠରିରେ ପଡ଼ିଥିବା କାଠି, କୁଟା ଓ ପବନରେ ଉଡ଼ିଆସୁଥିବା ପକ୍ଷ ଇତ୍ୟାଦି ଦେଇ ଝରକା ଉପରେ ପାରାଙ୍କ ପାଇଁ ଗୋଟିଏ ବସା ତିଆରି କରିଦେଲେ । ପୋଷା ମାନି ପାରା ଦୁଇଟି ଆରାମରେ ରହିଲେ । କିଛି ଦିନ ପରେ ମାଈ ପାରାଟି ଅଣ୍ଡା ଦେଲା ।

ଏହା ଏକ ସୁବିଧା ସମୟ ଦେଖି କର୍ଣ୍ଣେଲ୍ସ୍ପିସ୍ ମାଈ ପାରାଟିର ପାଦରେ ତିନି ଖଣ୍ଡ ଗ୍ଲୋଟ ଚିଠି ଲେଖି ପାରାଟିକୁ ଝରକା ବାହାରକୁ ଛାଡ଼ିଦେଲେ । ଖଣ୍ଡିଏ ଚିଠି ଲେଖାଯାଇଥିଲା ଧାଇମା ସ୍ପ୍ୟାଙ୍କୁ, ଆରଟି ରୋଜାକୁ ଏବଂ ତୃତୀୟଟି ଅନ୍ୟ ଯେ କୌଣସି ଭଦ୍ରବ୍ୟକ୍ତିଙ୍କୁ । ଏହି ଅନୁରୋଧ ଜଣାଇ ଲେଖାଯାଇଥିଲା ଯେ ସେ ଯଦି ଚିଠି ପାଆନ୍ତି, ତେବେ ଦୟା କରି ଚିଠି ଦୁଇଟି ସ୍ପ୍ୟାଙ୍କୁ ଦେଇଦେବେ । ଏବଂ ସ୍ପ୍ୟାଙ୍କୁ ଲେଖାଯାଇଥିଲା, ସେ ଚିଠିଟି ପାଇଲେ ବ୍ରିଇସନ୍ଟେନ୍ ହଫ୍ ଯାଇ ରୋଜାର ଚିଠିଟି ତାକୁ ଦେଇଦେବେ । ପାରା ସକାଳେ ଉଡ଼ିଯାଇ ସନ୍ଧ୍ୟାରେ ଫେରିଆସିଲା । ଫେରି ନଆସି ଉପାୟ ନାହିଁ; ଏଣେ ଯେ ଲୁଭେଷ୍ଟିନ୍‌ରେ ଅଣ୍ଡା ଦେଇଛି; ଅଣ୍ଡିରା ପାରାଟି ଅଣ୍ଡା ଉଷୁମାଉଥିଲା; ତା ପାଇଁ କିଛି ଖାଦ୍ୟ ଆଣିବାକୁ ପଡ଼ିଲା ।

ଭ୍ୟାନ୍ ବାର୍ଲି ଦେଖିଲେ ପାରା ପାଦରେ ଚିଠି ସେହିପରି ବନ୍ଧାହୋଇ

ରହିଛି । ଏଥିରେ ନିରାଶ ହେବାର କିଛି ନାହିଁ ଭାବି ସେ ତା ପରଦିନଠାରୁ ପ୍ରତିଦିନ ସକାଳେ ପାରାଟିକୁ ଉଡ଼ାଇଦେବାକୁ ଲାଗିଲେ । ଦିନ ଦିନ ହୋଇ ପନ୍ଦର ଦିନ ବିତିଯିବା ପରେ ସେ ଦେଖିଲେ ପାରାପାଦରେ ଆଉ



ଚିଠି ବନ୍ଧାଯାଇନାହିଁ । ଆନନ୍ଦରେ ସେ ନାଚିଉଠିଲେ । "ତା' ହେଲେ ନିଶ୍ଚୟ କେହି ଜଣେ ଚିଠିଟା ପାଇଛି ।"

ସତରେ ଚିଠିଟି ଧାଇମା ସ୍ୱୟହିଁ ପାଇଥିଲେ । ଘଟଣା କ'ଣ କି, ସେ ପାରାଗୁଡ଼ାକ ପ୍ରକୃତରେ ଥିଲେ ବକ୍‌ସଟେଲ୍‌ର । ହେଗ୍‌ରୁ ନିରାଶ ହୋଇ ଫେରିବା ପରେ ବକ୍‌ସଟେଲ୍ ଆଉ ଶାନ୍ତିରେ ଘରେ ବସିପାରିଲା ନାହିଁ । ପିଲାଛୁଆ ତାର କେହି ନଥାନ୍ତି । ଚାକରବାକରଙ୍କୁ କିଛି ନକହି ଦିନେ ସେ

ଘରୁ ବାହାରିଗଲା କଳା ଟ୍ୟୁଲିପ ଅନ୍ୱେଷଣରେ । ମାଲିକ ନାହିଁ ଦେଖି କିଛି ଦିନ ପରେ ଚାକରଟା କାମଛାଡ଼ି ଚାଲିଗଲା । ରହିଲା କେବଳ ମାଲୀଟା । ମଣିଷର ନିଜ ଖାଇବାକୁ ଖାଦ୍ୟ ନଥିବା ବେଳେ ପାରାଙ୍କୁ କିଏ ଖାଦ୍ୟ ଦେବ ? ବରଂ ମାଳୀ ପ୍ରତିଦିନ ଗୋଟିଏ କରି ପାରା ମାରି ଖାଇଲା । ଦେଖୁ ଦେଖୁ ଗୁଡ଼ାଏ ପାରା ମଧ୍ୟରୁ ବଞ୍ଚିଲେ ମାତ୍ର ପନ୍ଦରଟି । ସେଗୁଡ଼ାକ ନିର୍ବଂଶ ହୋଇଯିବା ଭୟରେ ଘର ଛାଡ଼ି ବାହାରେ ଉଡ଼ିଚାଲିଲେ । ମାଳୀ ଶେଷକୁ ସେଗୁଡ଼ାଙ୍କୁ ପଡ଼ଶା ଘର ଧାଈମା' ସ୍ତ୍ୟୁଙ୍କୁ ବିକିଦେଲା । କର୍ଣ୍ଣେଲିୟସ୍‌ଙ୍କର ଧନ-ସମ୍ପତ୍ତି ସବୁ ବାଜ୍ୟାପ୍ତ ହୋଇ ରାଜକୋଷକୁ ଚାଲିଗଲେ ବି ଘର ଖଣ୍ଡିକୁ ସ୍ତ୍ୟୁ ମାଡ଼ିବସି ରହିଥିଲେ । ସେ ବୃଦ୍ଧ ବୟସର ସବୁ ସ୍ନେହ ଦେଇ ପାରା ପୋଷିଲେ; କିନ୍ତୁ କିଛି ଦିନ ପରେ ଦେଖିଲେ ଦୁଇଟା ପାରା କମିଗଲେ । ସେ ମନଦୁଃଖରେ ଥାଆନ୍ତି । ପୁଣି କିଛିଦିନ ପରେ କର୍ଣ୍ଣେଲିୟସ୍ ପଠାଇଥିବା ମାଈ ପାରାଟି ଫେରିଆସି ଦିନତମାମ ଘରେ ରହିଲା ଓ ସନ୍ଧ୍ୟାରେ ଅନ୍ଧାରିଲେଭରେ ଫେରିଗଲା । ଏ ଘଟଣାଟା ପ୍ରାୟ ପନ୍ଦର ଦିନ ପରେ ବୁଢ଼ୀ ସ୍ତ୍ୟୁଙ୍କ ଦୃଷ୍ଟିରେ ପଡ଼ିଲା । ସେ ଚଟ୍‌କରି ଏ ଦଳଛଡ଼ା ପାରାଟାକୁ ଧରିପକାନ୍ତି ତ ଦେଖିଲେ ତା ପାଦରେ ବନ୍ଧା ହୋଇରହିଛି ଅନେକ ଆଶା ଓ ଆକାଂକ୍ଷାରେ ପରିପୂର୍ଣ୍ଣ ଚିଠିଖଣ୍ଡ ଅପ୍ରତ୍ୟାଶିତ ଚିଠି । ସ୍ତ୍ୟୁ ଆନନ୍ଦରେ ବିଭୋର ହୋଇଗଲେ । ତା ପରଦିନ ସକାଳୁ ଘରେ ତାଲା ଦେଇ ବୁଢ଼ୀ ଚାଲିଗଲେ ହେଗ୍ । ବ୍ରୁଇଟେନ୍ ହଫ୍‌ରେ ରାଇଫସର ଝିଅ ରୋଜା ପାଖରେ ସେଦିନ ବୁଢ଼ୀଙ୍କର ଗୁଡ଼ାଏ କାମ ।

ବିଚରା କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି ଏତେ କଥା ଜାଣିବେ କିପରି ? ଚିଠି ଯାଇଛି ସତ, କିନ୍ତୁ କେବେ ଓ କିପରି ତାହା ଯାଇ ରୋଜା ପାଖରେ ପହଞ୍ଚିବ ତାହା ହିଁ ହେଲା ଚିନ୍ତାର ବିଷୟ । ପୁଣି, ଚିଠିଟା ଯଦି କୌଣସି ବିପକ୍ଷଦଳ ଲୋକ ହାତରେ କିମ୍ବା ମହାରାଜାଙ୍କର ଗୁପ୍ତଚର ହାତରେ ପଡ଼ିଯାଏ, ତେବେ ଦଫା ରଫା ହୋଇଯିବ । ଆଶା ଓ ଆଶଙ୍କା ଭିତରେ କର୍ଣ୍ଣେଲିୟସ୍ ଦିନ କାଟିଚାଲିଛନ୍ତି । ହଠାତ୍ ଦିନେ ସଂଧ୍ୟାବେଳେ ବନ୍ଦି-ଶାଳାର ଶିଡ଼ି ଉପରୁ ସେ ଶୁଣିବାକୁ ପାଇଲେ ଏକ କୋମଳ ମଧୁର ପରିଚିତ

କଣ୍ଠସ୍ୱର । କର୍ଣ୍ଣେଲ୍‌ସ୍ମଥ୍‌ଙ୍କର ସର୍ବାଙ୍ଗରେ ଗୋଟାଏ ଶିହରଣ ଖେଳିଗଲା । ସେ କାନ ଡେରି ରହିଆଛନ୍ତି—ସେ କଣ୍ଠସ୍ୱର ଆଉ ଥରେ ଆସୁଛି କି ନା ଶୁଣିବା ଲାଗି । ସେ ତାହାହେଲେ ଏଠିକି ଆସିଛି ନା କ'ଣ ? ଝରକା ପାଖରୁ ଉଠିଆସି କର୍ଣ୍ଣେଲ୍‌ସ୍ମଥ୍ କୋଠରିର କବାଟ ପାଖରେ କାନେଇ ରହିଆଛନ୍ତି । ହେଇଟି ଆଉ ଥରେ ଶୁଭିଲା । ସେହି କଣ୍ଠସ୍ୱର, ହେଉ୍ କାରାଗାରର ମର୍ମାନ୍ତକ ନୈରାଶ୍ୟ ମୁହୂର୍ତ୍ତରେ ଯାହା କି ତାଙ୍କୁ ଦେଇ-ପାରିଥିଲା ମଧୁର ଆଶ୍ୱାସନା !!

କିନ୍ତୁ ରୋଜା ହେଉ୍ରୁ ଲିଭେଷ୍ଟିନ୍ ଆସିଲା କିପରି ? ଆସି ବା ବନ୍ଧଶାଳା ଭିତରେ ପ୍ରବେଶ କଲା କିପରି ? ସେ କ'ଣ ଏ କୋଠରି ପର୍ଯ୍ୟନ୍ତ ଆସିବ ନାହିଁ ? ଏତେ ନିକଟରେ ଥାଇ ବି କ'ଣ ଏତେ ଦୂରରେ ରହିପାରେ ରୋଜା ? ଆଶା ଆଶଙ୍କାର ଦୋଳିରେ ଝୁଲୁଛନ୍ତି ବାର୍ଲି, ଏତିକିବେଳେ କୋଠରିର ଦରଜାରେ ଲାଗିଥିବା ଜାଲିକବାଟଟି ଚଟ୍‌କରି ଖୋଲିଗଲା ଏବଂ ସେଠାରେ ଦେଖାଗଲା ରୋଜାର ଆନନ୍ଦ ଉତ୍ଫୁଲ୍ଲ ଉଜ୍ଜ୍ୱଳ ମୁହଁଟି । ଲୁହା ଗରାଦ ଫାଙ୍କରେ ମୁହଁ ଗୁଞ୍ଜି ସେ ଡାକପକାଇଲା, "ଶୁଣୁଛନ୍ତି କି ? ଶୁଣୁଛନ୍ତି ? ମୁଁ ଆସିଛି ।"

ଅନ୍ତର୍ଯ୍ୟାମୀ ଭଗବାନଙ୍କୁ ପ୍ରଣାମ ଜଣାଇ କର୍ଣ୍ଣେଲ୍‌ସ୍ମଥ୍‌ଙ୍କର ଦୁଇବାହୁ ଉପରକୁ ଉଠିଗଲା ଏବଂ ଉଦ୍ଦାମ ଆନନ୍ଦର ଉଚ୍ଛ୍ୱାସ ରୂପରେ କର୍ଣ୍ଣେଲ୍‌ସ୍ମଥ୍‌ଙ୍କ କଣ୍ଠରୁ ପ୍ରିୟ ସମ୍ଭାଷଣ ବାହାରିଆସିଲା, "ରୋଜା, ମୋ ପ୍ରାଣର ରୋଜା ! ସତେ ତୁମେ ଆସିଛ ?"

"ଆସ୍ତେ ଆସ୍ତେ କହନ୍ତୁ । ପଛରେ ବାପା ଆସୁଛନ୍ତି ।"

"ତୁମ ବାପା !"

"ହଁ, ତଳେ ଦୁର୍ଗପାଳଙ୍କଠାରୁ ନିର୍ଦ୍ଦେଶ ନେଉଛନ୍ତି । ଏଇଲେ ଉପରକୁ ଆସିବେ ।"

"ତାଙ୍କର ଏଠି କି କାମ ?"

"ଓଃ, ମୁଁ କହିନାହିଁ ସତ୍ୟ ! ଆପଣଙ୍କର ଧାଇ ମାଆ ଯେତେବେଳେ ଆପଣଙ୍କର ଚିଠିଟି ପଢ଼ି ମତେ ଶୁଣାଇଲେ, ସେତେବେଳେ କ'ଣ କଲେ

ଏଠିକି ଆସିପାରିବ,ତାହା ଭାବିବସିଲି । ବହୁତ ଦିନରୁ ସୁବିଧା ଖୋଜୁଥିଲି । ହଠାତ୍ ମନେପଡ଼ିଲା ଲାଡ଼େମ୍‌ଠାରୁ ତିନିମାଇଲ ଦୂରରେ ଆମ ମହାରାଜା-ଙ୍କର ଯେଉଁ ଫାର୍ମହାଉସ୍‌ଟି ଅଛି, ମୋର ଜଣେ ମାଉସୀ ସେଠାରେ ରହନ୍ତି । ଭାବିଲି ତାଙ୍କର ସାହାଯ୍ୟ ନେଲେ ଭଲ ହେବ; କାରଣ ସେ ଆମ ମହା-ରାଜାଙ୍କର ପିଲାଦିନର ଧାଈମା' ଥିଲେ; ମହାରାଜା ତାଙ୍କୁ ଖୁବ୍ ସମ୍ମାନ କରନ୍ତି । ମାଉସୀଘରକୁ ଯିବି ବୋଲି ବାପାଙ୍କ ସାଙ୍ଗରେ ଲଗେଇଲି । ବାପା ରାଜି ହେବାମାତ୍ରେ ମୁଁ ମାଉସୀଙ୍କ ପାଖକୁ ଚାଲିଗଲି । ମୋ ଭାଗ୍ୟକୁ ଅଳ୍ପଦିନ ଭିତରେ ନିଜେ ମହାରାଜା ମାଉସୀଙ୍କୁ ଦେଖିବା ଲାଗି ସେଠାକୁ ଆସିଲେ । ସୁଯୋଗ ଜାଣି ମୁଁ ମହାରାଜାଙ୍କୁ ଜଣାଇଲି ଯେ ମୋ ବାପାଙ୍କୁ ହେଗ୍‌ରୁ ଲାଡ଼େମ୍‌କୁ ଟ୍ରାନ୍‌ସ୍‌ଫର୍ କରିଦେଲେ ଭଲ ହୁଅନ୍ତା; ହେଗ୍ ମହରଗ ଜାଗା, ପଇସାପତ୍ର ଅଣ୍ଟୁ ନାହିଁ । ନିଜ ଧାଈମାଆର ଝିଆଟିର ଏ ସାମାନ୍ୟ ନିବେଦନଟା ମହାରାଜା ଉପେକ୍ଷା କରିନପାରି ସଙ୍ଗେ ସଙ୍ଗେ ବାପାଙ୍କୁ ଏଠିକି ବଦଳି କରିବାକୁ ଆଦେଶ ଦେଇଦେଲେ; କିନ୍ତୁ ଯଦି ମୋର ଅସଲ ଉଦ୍ଦେଶ୍ୟଟି ଜାଣିଥାଆନ୍ତେ, ତେବେ ମୋ କଥାରେ ଜମା କାନ ଦିଅନ୍ତେ ନାହିଁ ।" କହି ରୋଜା ଟିକିଏ ହସିଦେଲା ।

"ତାହାହେଲେ ତୁମେ ପକ୍‌କା ସରକାରୀ ଆଦେଶ ନେଇ ଏଠିକି ଚାଲିଆସିଛ ?"

"ଦେଖୁଛନ୍ତି ତ ।" ଗର୍ବ ଓ ଆନନ୍ଦରେ ଉଜ୍ଜ୍ୱଳ ପଡ଼ିଲା ରୋଜାର ମୁହଁ ।

"ତାହାହେଲେ ସବୁ ଦିନ ତୁମ ସହିତ ଦେଖାହେବ ରୋଜା ?" —ଆଶାନ୍ୱିତ ହୋଇ କର୍ଣ୍ଣେଲ୍‌ସ୍‌ସ୍ ପଚାରିଲେ ।

"ସୁବିଧା ପାଇବାମାତ୍ରେ ମୁଁ ଆସୁଥିବି ।"

"ରୋଜା !! ରୋଜା !! ସତେ ତୁମେ ମତେ ଭଲପାଅ ରୋଜା ?"

"ହେ ! ବାପା ଆସିଲେଣି ।" କହି ଚପଳ ହରିଣୀ ପରି ରୋଜା ଚାଲିଗଲା ସେଠାରୁ । ଏକ ଅବ୍ୟକ୍ତ ଆନନ୍ଦରେ ଆତ୍ମହରା ହୋଇ ଚାହିଁରହିଲେ ଯୁବକ ଭ୍ୟାନ୍ ବାର୍ଲି ।

ଅଳକ୍ଷଣ ମଧ୍ୟରେ କୋଠରୀର ଦ୍ୱାର ଖୋଲିଗଲା । ବାହାରେ ଠିଆହୋଇ ଦେଖା । ଭିତରେ ପ୍ରବେଶ କଲା ମିଷ୍ଟର ଗ୍ରାଇଫସ୍ । ସେ ଜାଣେନା ଯେ କର୍ଣ୍ଣେଲିୟସ୍‌ଙ୍କୁ ଆଣି ଲବେଷ୍ଟିନ୍‌ରେ ରଖାଯାଇଛି । ସେ ଭିତରେ ପଶୁ ପଶୁ ପଚାରିଲା, "କଣ, କେମିତି ଅଛ ? ମୁଁ ଏଠାରେ ନୂଆ ଜେଲର ।"

"ଓଃ; ସୁପ୍ରଭାତ ମିଷ୍ଟର ଗ୍ରାଇଫସ୍ ! ଆପଣ ହେଗ୍‌ରେ ଥିଲେଟି ?"

"ହୁଁ ।"

"ଆପଣଙ୍କର ଯେଉଁ ହାତ ଭାଙ୍ଗିଯାଇଥିଲା, ଭଲଅଛି ?"

"ହୁଁ ହୁଁ, ଭଲଅଛି । ତୁମେ କିପରି ଜାଣିଲ ?"

"ମୁଁ ପରା ସେହି ଡାକ୍ତର ଭ୍ୟାନ୍ ବାର୍ଲି ।"

ଗ୍ରାଇଫସ୍ କର୍ଣ୍ଣେଲିୟସ୍‌ଙ୍କୁ ଚାହିଁ ଚାହିଁ ବିରକ୍ତ ହୋଇ କହିଲା, "ଏତେ ଭଲକାମ କରି ମଧ୍ୟ ମହାରାଜା ଏପରି ଗୋଟାଏ ଗୋଟାଏ ଭୁଲ କରିବସନ୍ତି ! ବାବୁ, ପଢ଼ୁଆଲୋକଙ୍କୁ ଗିରଫ କଲେ ତ ବଞ୍ଚିବାକୁ ଦେବା ଉଚିତ ନୁହେଁ । ତୁମକୁ ପ୍ରାଣଦଣ୍ଡ ମିଳିଥିଲା, ଠିକ୍ ହୋଇଥିଲା । ମହାରାଜା ବୃଥାଟାରେ ଆଦେଶ ବଦଳାଇ ସବୁ ମାଟିକରିଦେଲେ ।"

କୌତୂହଳ ପ୍ରକାଶ କରି କର୍ଣ୍ଣେଲିୟସ ପଚାରିଲେ, "ପଢ଼ୁଆଲୋକଙ୍କ ଉପରେ ଆପଣଙ୍କର ଏତେ ରାଗ କାହିଁକି ଶୁଣେ ।"

"କାହିଁକି ? ସେଗୁଡ଼ାକ ମଦ ଖାଆନ୍ତି ନାହିଁ; ଗୋଳମାଳ କରନ୍ତି ନାହିଁ, ସବୁବେଳେ ମୁଣ୍ଡ ଥଣ୍ଡା ରଖିଥାଆନ୍ତି ।"

"ସେ ତ ଅ‌ାପଣଙ୍କ ପକ୍ଷରେ ସୁବିଧା କଥା ।"

"ସୁବିଧା? ଆହେ, ମୁଣ୍ଡ ଥଣ୍ଡା ରଖନ୍ତି ଷଡ଼ଯନ୍ତ୍ର କରିବା ଲାଗି । ଦଶଟା ମୂର୍ଖଙ୍କୁ ବନ୍ଦୀ କରି ରଖିବା ସହଜ, ଗୋଟିଏ ପଣ୍ଡିତକୁ ବନ୍ଦୀ କରି ରଖିବା ଭୀଷଣ କଷ୍ଟ । ମୁଁ କିନ୍ତୁ ଭାରି ଖରାପ ଲୋକ, ଜାଣିଥାଅ ! ମୋ ସାଙ୍ଗରେ ଯଦି ଖେଳିବ, ତେବେ ମତେ ଆଉ ପଛେ ଦୋଷ ଦେବନି । ହାଡ଼ଗୋଡ଼ ଭାଙ୍ଗି ଛତୁ କରିଦେବି । ବୁଝିଛ ?" କଥା କହୁ କହୁ ଗ୍ରାଇଫସ୍ ଯାଇ

ଝରକା ପାଖରେ ଠିଆହୋଇ ବାହାରକୁ ଚାହିଁଲା । ସେହି ଅବସରରେ ରୋଜା କୋଠରି ଭିତରକୁ ଆସି କର୍ଣ୍ଣେଲିୟସ୍‌ଙ୍କ ହାତ ଚପିଦେଇ ଚୁପ୍‌କରି କହିଦେଲା, "ଆଜି ରାତି ନୁହେଁ ।" ଝରକା ଦେଇ ବାହାରକୁ ଚାହିଁ ଚାହିଁ ଗ୍ରାଇଫସ୍ ପଚାରିଲା, "ଭଲ ଝରକା ଖଣ୍ଡେ ହୋଇଛି ତ ! ଏଠୁ କ'ଣ ସବୁ ଦେଖାଯାଉଛି ?''

''ଝରକା ପାଖରେ ଠିଆହେଲେ ବହୁତ ଦୂର ଯାଏ ଦେଖାଯାଉଛି ଚମତ୍କାର ଦୃଶ୍ୟ ।'' ଆନନ୍ଦ ଗଦ୍‌ଗଦ ହୋଇ କର୍ଣ୍ଣେଲିୟସ କହିପକାଇଲେ ।

"ଚମତ୍କାର !" ଟିକିଏ ଗର୍ଜନ କଲା ପରି ଗ୍ରାଇଫସ୍ କହିଲା । ଗୋଟିଏ ନୂଆ ଲୋକର କର୍କଶ ସ୍ୱର ଶୁଣି ପାରା ଦୁଇଟି ହୁରୁଡ଼ି ଫର୍ ଫର୍ କରି ଉଡ଼ି ଚାଲିଗଲେ । ଗ୍ରାଇଫସ୍ ଚମକି ଉଠି ପଚାରିଲା, ''ସେଗୁଡାକ କ'ଣ ?''

''ମୋର ପୋଷା ପାରା ଦୁଇଟା । ''

''ତୁମର ପାରା ? କଇଦୀମାନଙ୍କ ନିଜର କିଛି ନରହିବା କଥା । କାଲି ସକାଳୁ ମାରି ଖତମ୍ କରିଦେଉଛି ସେ ଦୁଇଟାକୁ ।"

''ପ୍ରଥମେ ଧରିପାରିଲେ ତ ।''

"ଧରୁଛି କି ନାହିଁ କାଲି ସକାଳେ ଜାଣିବ । ପାରାମାଂସଟା ସୁଆଦ ଯେ ।'' କହୁ କହୁ ଗ୍ରାଇଫସ୍ ଦୁଆରେ ତାଲା ପକାଇ ଚାଲିଯିବା ପରେ ପରେ ପାରାଙ୍କ ବସାଟା ଭାଙ୍ଗି କର୍ଣ୍ଣେଲିୟସ୍ ତଳକୁ ଫୋପାଡ଼ିଦେଲେ । ପାରାଗୁଡ଼ାକ ଯଦି ଏଠାରେ ରହିବେ, ତେବେ ଏ ନିଷ୍ଠୁର ଲୋକ ହାତରେ ମାରି ଖାଇଯିବ । ବରଂ ଏଠାରୁ ଚାଲିଯାଇ ବରଂ ଡର୍ଟ୍‌ରେ ରହନ୍ତୁ । ଗ୍ରାଇଫସ୍ ଦୁଷ୍ଟ । ବନ୍ଦୀମାନଙ୍କୁ କଷ୍ଟ ଦେଇ ସେ ଆନନ୍ଦ ପାଏ । ତା'ପରି ଗୋଟାଏ ଲୋକ ଲଭେଷ୍ଟିନ୍ ଆସିଛି—ଏହା କିଛି କମ୍ ଦୁର୍ଭାଗ୍ୟର କଥା ନୁହେଁ; କିନ୍ତୁ ତା ସହିତ ଆସିଛି ରୋଜା । ଏକମାତ୍ର ରୋଜା ଗ୍ରାଇଫସ୍-ଜନିତ ସବୁ କ୍ଷତି ପୂରଣ କରିଦେଇ ପାରିବ । ରୋଜା, ଯାହାର ଅର୍ଥ ଆଜି ଆଶା, ଆଶ୍ୱାସନା ଓ କଳା ଟ୍ୟୁଲିପ୍ । ନୂଆ ଆଶା ଓ ନୂତନ ଉନ୍ମାଦନାରେ

କେତେ ଯେ ସୁନେଲି ସ୍ୱପ୍ନ ଖେଳିଉଠିଲା କର୍ଣ୍ଣେଲ୍‌ସ୍ମିଥ୍‌ଙ୍କ ଆଖି ଆଗରେ, କଳନା ନାହିଁ ।

ରାତି ନଅଟା । ରୋଜା ଚୁପ୍ ଚୁପ୍ କହିଯାଇଥିଲା ସେ ରାତି ନଅଟାରେ ଆସିବ । ନଅଟା ବାଜୁ ବାଜୁ ଶିଢ଼ିରେ ମୃଦୁ ପାଦଶବ୍ଦ ଓ ପୋଷାକର ଖସ୍ ଖସ୍ ଶବ୍ଦ ଶୁଣାଗଲା । ଆକାଂକ୍ଷିତ ହୋଇ କର୍ଣ୍ଣେଲ୍‌ସ୍ମିଥ୍ ବାରଣ୍ଡାପଟ ଝରକା ପାଖରେ ଅପେକ୍ଷା କରି ରହିଲେ । ଚୁପ୍ କରି ଝରକାର କବାଟ ବାହାରପଟକୁ ଖୋଲିଗଲା । ଗ୍ରେଟ ଝରକାଟିର ଆର ପାଖରେ ହାତରେ ବାପଟିଏ ଧରି ଠିଆହୋଇଗଲା ରୋଜା ।

"ହେଇଟି, ମୁଁ ଆସିଛି ।"

"ରୋଜା ! ରୋଜା !!"

"ସତ କହୁଛନ୍ତି—ମତେ ଦେଖି ଖୁସି ହେଉଛନ୍ତି ?"

"ତା'ବି କହିବାକୁ ପଡ଼ିବ ? ସତ କହୁଛି ରୋଜା, ତୁମକୁ ଦେଖିଲେ ମୋର ଏ ହତଭାଗା ଜୀବନର ସବୁ ଦୁଃଖ ପାସୋର ହୋଇଯାଉଛି । —ଆଚ୍ଛା, ଏତେ ରାତିରେ ତୁମେ କିପରି ଏ ଦୋତାଲା ଉପରକୁ ଆସିଲ କହିଲ ?" କର୍ଣ୍ଣେଲ୍‌ସ୍ମିଥ୍ ପଚାରିଲେ ।

"କାହିଁକି ? ବାପା ତ ରାତି ନଅଟାରେ ଢୁଲେଇବାକୁ ଅରମ୍ଭ କରନ୍ତି । ଟିକିଏ ବେଶି ମଦ ଦେଇଦେଲେ କନ୍ଦରେ ବେହୋସ । ମୁଁ ଏଥର ସବୁଦିନ ଏଇଆ କରିବି ।—ହେ, ତୁମେ ଆଉ ବାପାଙ୍କୁ ମଦଖିଆର ଅପକାରିତା ବିଷୟରେ ଦିନେହେଲେ କିଛି କହିଦେବନି । ଯଦି କହିଦେବ, ରାତିରେ ଦେଖାହେବା ବନ୍ଦ, ହଁ !"

"ଯଦି ନକହେ ତାହାହେଲେ ତୁମେ ସବୁଦିନ ରାତିରେ ଆସୁଥିବ ?"

"ସବୁଦିନ ରାତିରେ ଠିକ୍ ଏତିକବେଳକୁ ଆସି ଘଣ୍ଟାଟିଏ କଥାବାର୍ତ୍ତା ହୋଇ ଯାଉଥିବ ।" ରୋଜା ସେହି ଝରକାର ଲୁହା ଛଡ଼ର ଅତି ପାଖକୁ ଲାଗିଆସିଲା ।

"ଧନ୍ୟବାଦ, ଧନ୍ୟବାଦ ରୋଜା, ସତେ ତୁମେ ମୋର କେତେ

ନଜର ନୁହଁ !''—ନିର୍ଜନ କାରାଗାରର ବନ୍ଦୀଜୀବନରେ ଏହି କଳ୍ପନାତୀତ ସୌଭାଗ୍ୟର ଆସ୍ୱାଦନରେ ହୋଇ କର୍ଣ୍ଣେଲ୍‌ସ୍ମିଥ୍ ମଧ୍ୟ ଝରକାଛଡ଼ର ଅତି ନିକଟକୁ ଚପି ହୋଇ ଆସିଲେ । ଦୁଇଟି ତରୁଣ ମୁଖ, ଦୁଇଟି ତରୁଣ ବକ୍ଷ ଏବଂ କେତୋଟି ତରୁଣ ଅଙ୍ଗୁଳି ପରସ୍ପରକୁ ସ୍ପର୍ଶକରି ଏକ ସ୍ୱର୍ଗୀୟ ଆନନ୍ଦରେ ନାଚଉଠିଲା ।

ରେଜିନା କହିଲା, ''ମୁଁ ଆପଣଙ୍କର ସେହି ଫୁଲପୁଆ ବି ଆଣିଛି ଯେ ।''

ଆନନ୍ଦରେ ନାଚଉଠିଲେ କର୍ଣ୍ଣେଲ୍‌ସ୍ମିଥ୍ ଭ୍ୟାନ୍ ବାର୍ଲି । ଜୀବନର ଏତେ ସାଧନାର ଧନ ସେହି ଟ୍ୟୁଲିପ ପୁଆଗୁଡ଼ିକୁ ରେଜିନା ସାଇତି ରଖିଛି କି ନାହିଁ ତାହା ପଚାରିବାକୁ ସେ ଏପର୍ଯ୍ୟନ୍ତ ସାହସ ପାଉନଥିଲେ ।

''ସେଗୁଡ଼ିକ ରଖିଛ ତାହା ହେଲେ ? ନଷ୍ଟ କରିଦେଇନା ?''

''ଆପଣଙ୍କର ପ୍ରିୟ ଜିନିଷ—ମୋତେ ରଖିବାକୁ ଦେଇଥିଲେ—ନଷ୍ଟ କରିଦିଅନ୍ତି ?''

''କେବଳ ରଖିବାକୁ ଦେଇନାହିଁ, ତୁମକୁ ମୁଁ ସେଗୁଡ଼ିକ ଦେଇ ହିଁ ଦେଇଛି । ସେ ସବୁ ତୁମର ଜିନିଷ ।''

''ନା ନା, ତା କିପରି ହୋଇପାରେ ? ଆପଣ ବଞ୍ଚିଛନ୍ତି । ଭଗବାନ ମହାରାଜାଙ୍କର ମଙ୍ଗଳ କରନ୍ତୁ—ସେ ଆପଣଙ୍କୁ ବଞ୍ଚାଇ ଦେଇଛନ୍ତି । ତାଙ୍କ ମନରେ ଆପଣଙ୍କ ପ୍ରତି ଦୟା ଅଛି ବୋଲି ଜାଣିବା ଦିନୁ ମୁଁ ଲାଡ଼େନ ଯାଇ ବାପାଙ୍କର ଲିଭେଷ୍ଟିନ୍ ବଦଳି ପାଇଁ ମାଉସୀଙ୍କୁ କହିବା ପାଇଁ ସୁଯୋଗ ଖୋଜୁଥିଲି । ଭାଗ୍ୟକୁ ଆପଣଙ୍କର ଧାଇମା ସ୍ୱୟଂ ଆପଣଙ୍କର ଚିଠି ଆଣି ପହଞ୍ଚାଇଦେଲେ ।''

''ତା'ହେଲେ ମୋ ଚିଠି ପାଇବା ଆଗରୁ ତୁମେ ମୋ ପାଖକୁ ଆସିବା ଲାଗି ଚେଷ୍ଟା କରିସାରିଥିଲ ?'' କୃତଜ୍ଞତାରେ ଥରିଉଠିଲା କର୍ଣ୍ଣେଲ୍‌ସ୍ମିଥ୍-ଙ୍କର କଣ୍ଠ ।

''ହଁ, କିନ୍ତୁ ଆପଣଙ୍କର ଚିଠି ପାଇ ଖୁସି ହେଲି ଯେତିକି, ଦୁଃଖ ବି କଲି ସେତିକି ।''

''କାହିଁକି ?''

"ମତେ ଲେଖିପଠିଛି ଅସେନି ।···କେତେ ତ ଚିଠି ଆସେ ଯେ, ମୁଁ ସେଗୁଡ଼ାକୁ ଚୁଲିରେ ପକାଇଦିଏ ।"

"କାହିଁକି ?"

"ଦୁନିଆରେ ପର ଝିଅଙ୍କ ପାଖକୁ ପ୍ରେମଚିଠି ଦେବାକୁ ଛତରା-ଟୋକାଙ୍କର ତ ଅଭାବ ନାହିଁ । ମୁଁ ନ ପଢ଼ିପାରିଲେ ବି ସାଙ୍ଗସୁଖିଙ୍କ ହାତରେ ପଢ଼ାଇ ଦେଖେ ଯେ ସବୁ ସେହି ଚିଠି । ସେଗୁଡ଼ାକରେ ଛେପ ପକାଇ କିଆଁକୁ ଫୋପାଡ଼ି ନଦେଇ ରଖିବି ନା ? ତେବେ ଗୋଟିଏ ଘଟଣା ପରେ ମୁଁ ଆଉ ଚିଠି ନପଢ଼ାଇ ବି ଚୁଲିରେ ମାଡ଼ିଦିଏ ।"

"ଗୋଟାଏ ଘଟଣା ପରେ ? କି ଘଟଣା, ରୋଜା ?"

ଲଜ୍ଜାରେ ରୋଜାର ମୁଖମଣ୍ଡଳ ରକ୍ତିମ ହୋଇ ଉଠିଲା । ତା ମୁହଁରୁ କେବଳ ବାହାରିଲା, "ଯେଉଁଦିନ ଆପଣ···"—ନା, ସେ ଆଉ ସବୁ କଥା ଖୋଲିପାରିଲା ନାହିଁ । କର୍ଣ୍ଣେଲିୟସ୍‌ଙ୍କର କରସ୍ପର୍ଶରୁ ଅପସରି ଯାଇ ସେ ଦୌଡ଼ି ପଳାଇଲା । ଆନନ୍ଦବିହ୍ୱଳ ହୋଇ ଅନ୍ଧାର ରାତକୁ ଚାହିଁରହିଲେ କାରାରୁଦ୍ଧ କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି ।

ତା ପରଦିନ ରାତି ନଅଟା । କର୍ଣ୍ଣେଲିୟସ୍‌ଙ୍କୁ ବିଶେଷ ପ୍ରତୀକ୍ଷା କରିବାକୁ ପଡ଼ିଲା ନାହିଁ । ଠିକ୍ ନଅଟାରେ ରୋଜା ଆସି ପହଞ୍ଚିଗଲା ।

"ହେଇଟି ଆପଣଙ୍କର ଟ୍ୟୁଲିପ୍ ପୁଆତକ ନେଇ ଆସିଛି । କେତେଦିନ ହେଲା ଦେଖିନାହାନ୍ତି—ଦେଖିବାକୁ ଆତୁର ହେଉଥିବେ ।"

"ମୁଁ କିନ୍ତୁ ତୁମକୁ ଦେଖିବା ଲାଗି ଆତୁର ହୋଇ ଚାହିଁରହିଛି ରୋଜା !"

"ବେଶ୍ ମୁଁ ତ ଆସିଲି, ଏଥର ।"

"କାଲି କାହିଁକି ଦୌଡ଼ି ଚାଲିଗଲ ?

"ବାଃ··· ! ନିଅନ୍ତୁ ଆପଣଙ୍କର ଟ୍ୟୁଲିପ୍ ପୁଆ ।" କହି ରୋଜା ପୁଅ ତିନୋଟି ଝରକା ଛିଡ଼ ଫାଙ୍କବାଟେ ବଢ଼ାଇଦେଲା; ସେହି ପୂର୍ବର କାଗଜ ଖଣ୍ଡିକରେ ବନ୍ଧାହୋଇ ରହିଥିଲା ସେଗୁଡ଼ିକ । ସେଗୁଡ଼ିକୁ ନନେଇ ଭ୍ୟାନ୍ ବାର୍ଲି କହିଲେ, "ଅବୁଝା ହୁଅନ୍ତନି । ତିନୋଟିଯାକ ପୁଆ ଏକା ଜାଗାରେ

ରଖିବା ହିତପଦ ନୁହେଁ । ଆଚ୍ଛା, ତୁମ ଘରକୁ ଲାଗି କିଛି ବଗିଚା ଅଛି ?''

"ସୁନ୍ଦର ବଗିଚାଟିଏ ଅଛି । ମୋ କୋଠରୀର ଝରକାକୁ ଲାଗି ରହିଛି ।''

''ବେଶ୍ । ସେଠାରୁ ଭଲ ସ୍ଥାନ ଦେଖି ମତେ ମୁଠାଏ ମାଟି ଆଣିଦେବ । ଟ୍ୟୁଲିପ୍ ଗଛ ପାଇଁ ସେ ମାଟି ଉପଯୁକ୍ତ କି ନାହିଁ ମୁଁ ଦେଖିବି । ଯଦି ଭଲ ମାଟି ହୁଏ, କିମ୍ବା ତାକୁ ଖତ-ସାର ଦେଇ ଉପଯୁକ୍ତ କରାଯାଇ-ପାରେ, ତେବେ ତୁମେ ଗୋଟିଏ ପୁଆ ସେହି ବଗିଚାରେ ଲଗାଇବ ।''

"ଅନ୍ୟ ଦୁଇଟି ?',

''ସୁବିଧା ଯଦି ପାଏ ତେବେ ମୁଁ ଗୋଟିଏ ପୁଆ ନେଇ ମୋ କୋଠରି ଭିତରେ ଲଗାଇବି । ଆଉ ଗୋଟିଏ ତୁମେ ସାଇତି ରଖିବ ।''

"ପୁଣି ମୁଁ ?''

"ହଁ, ଗ୍ରେଜା ! ତୁମେ ମୋଠାରୁ ଦୂରେଇ ଯାଅନି । ତୁମେ...''

ଏହିପରି କେତେ କଣ କଥାବାର୍ତ୍ତା, କେତେ ଭାବବିନିମୟ ଭିତରେ ପ୍ରତି ରାତିରେ ନଅଟାରୁ ଦଶଟାଯାଏ କଟିଯାଏ ଦୁଇ ଅନ୍ତରଙ୍ଗ ବନ୍ଧୁଙ୍କର । ଗ୍ରେଜା ଜେଲ ବଗିଚାରେ ବିଭିନ୍ନ ସ୍ଥାନରୁ ମାଟିର ନମୁନା ନେଇ ଆସିଲା । ମାଟି ପରୀକ୍ଷା କରି ସବୁଠାରୁ ଭଲ ସ୍ଥାନ କେଉଁଟି ହେବ, ତାହା ନିର୍ଣ୍ଣୟ କରାଗଲା । ସେଥିରେ କି କି ସାର ଦେବାକୁ ହେବ କର୍ଣ୍ଣେଲିୟସ୍ ଟିପି-ଦେଲେ । ଗ୍ରେଜା ଧୀରେ ଧୀରେ ବଜାରରୁ ସେ ସବୁ ସାର କିଣିଆଣି ମାଟିରେ ମିଶାଇ କ୍ଷେତ୍ର ପ୍ରସ୍ତୁତ କରିବାକୁ ଲାଗିଗଲା । ଏକକାଳୀନ ଗୁଡ଼ାଏ ମାଟି ଆଣିଲେ କେହି ସନ୍ଦେହ କରିବ ଭାବି, ଗ୍ରେଜା ପ୍ରତିଦିନ ମୁଠାଏ ମୁଠାଏକରି ଖତ-ସାରଦିଆ ମାଟି ଆଣି କର୍ଣ୍ଣେଲିୟସଙ୍କ ପାଖରେ ଜମାଇଲା । ଦିନେ କର୍ଣ୍ଣେଲିୟସ୍ କହିଲେ, "କିନ୍ତୁ ଗ୍ରେଜା, ମୋ ମନକୁ କାହିଁକି ଗୋଟାଏ ଭୟ ଆସୁଛି ।"

"କି ଭୟ ?"

"ଆମର ହସଖେଳ, ଆମର ଏ ମଧୁର ଯୋଜନା, ଏ ସୁନେଲି ସ୍ୱପ୍ନ

ସବୁଥିରେ ପୂର୍ଣ୍ଣଚ୍ଛେଦ ପଡ଼ିଯିବ, ଯଦି ତୁମ ବାପା ଏଠାରୁ ବଦଳି ହୋଇ ଚାଲିଯାଆନ୍ତି ।"

"ସତେ, ସବୁ ଶେଷ ହୋଇଯିବ ।"

"ମୁଁ ବା ତୁମକୁ କପରି ଚଠି ଝଣ୍ଟେ ଦେଇପାରିବ ?"

"ଆପଣ ଯଦି ବା ଚଠି ଦେବେ, ମୁଁ ତ ପଢିପାରିବ ନାହିଁ ; ଯଦି ଦୟା କରି ମତେ ଲେଖାପଢ଼ା ଶିଖାଇ ଦଅନ୍ତି, ତେବେ ଆମର ଏ ମଧୁର ସମ୍ପର୍କ ଚରଦିନ ଲଗି ଅତୁଟ ହୋଇ ରହିଯାଆନ୍ତା ।''

"କେବେଠାରୁ ପଢ଼ାପଢ଼ି ଆରମ୍ଭ କରିବା ?"

''ବର୍ତ୍ତମାନଠାରୁ ।''

''ବର୍ତ୍ତମାନ ? କାହିଁ ? ବହି ନାହିଁ, କାଗଜ କଲମ ନାହିଁ ।"

''ହଁ ହଁ ଅଛି ; ଆମର ବହି ଅଛି । କର୍ଣ୍ଣେଲସ୍ଟପ୍ ଡ-ଡ଼ଇଟ୍ ଯେଉଁ ବାଇବେଲ୍‌ଟି ଦେଇଥିଲେ, ସେ ବହି ତ ଅଛି । କାଲି ସନ୍ଧ୍ୟାରୁ ମୁଁ ନେଇ ଆସୁଥିବ । କାଗଜ ପେନ୍‌ସିଲ୍ ବି ଆଣିଥିବ ।''

ଦୁହେଁ ଦେଖିଲେ, ପ୍ରତି ରାତିରେ ଘଣ୍ଟାଏ ସମୟ ମିଳୁଛି । ସତରେ, ଏ ସମୟଟା ଖୁସି ଗପରେ ନକଟାଇ ଯଦି ପଢ଼ାପଢ଼ିରେ ଲଗାଯାଆନ୍ତା, ତେବେ ବହୁ ଉପକାର ସାଧିତ ହୁଅନ୍ତା । ପରଦିନ ରାତିରୁ ଯୋଜନା ଅନୁଯାୟୀ କାମ ଚାଲିଲା । କର୍ଣ୍ଣେଲସ୍ଟପ୍ ଝରକା-ଛଡ଼ରେ ଦୁଇଖଣ୍ଡ କାଠି ବାନ୍ଧିଦେଲେ । ତାହାର ଉପରେ ବହିଟି ରହେ । ମହମବତିଟି ବି ଜଳେ । ବେଳେବେଳେ ରୋଜା ହାତରେ ବତିଟି ଟେକ ଧରେ । କୋଠରି ବାହାରେ ଛାତ୍ରୀ ଓ କୋଠରି ଭିତରେ ଶିକ୍ଷକ । ଲଷ୍ଟର ଲୁହା ଝରକାର ଗୋଟିଏ ପାଖରେ ଶ୍ରଦ୍ଧା ଓ ଆଗ୍ରହ, ଅନ୍ୟ ପାଖରେ ସ୍ନେହ ଓ ପ୍ରେମ । ସରଳ ସ୍ୱଚ୍ଛନ୍ଦ ଗତିରେ ପାଠପଢ଼ା ଚାଲିଲା । ଏ ଭିତରେ ରୋଜା ଗୋଟିଏ ଭଙ୍ଗା ମାଟି କଳସ ଆଣି କୌଣସିମତେ ଝରକା ଭିତରେ ଗଳାଇ କର୍ଣ୍ଣେଲସ୍ଟପଙ୍କୁ ଦେଇଦେଲା । ଉପଯୁକ୍ତ ପାଗ ଦେଖି କର୍ଣ୍ଣେଲସ୍ଟପ୍ ଗୋଟାଏ କଳା ଟ୍ୟୁଲପ ପୁଆ ସେହି କଳସରେ ପୋତିଦେଲେ ।

## ସାତ

ସେଦିନ ରେଜା ଆସିବାବେଳକୁ ଅଧଘଣ୍ଟାଏ ଡେରି ହୋଇଗଲା । ପାଠପଢ଼ା ଓ ଖୁସିଗପ ସରିଆସିବା ବେଳକୁ କର୍ଣ୍ଣେଲ୍‌ସ୍ମିଥ୍ ପଚାରିଲେ, "ଆଜି ତୁମର ଏତେ ଡେରି ହେଲା କାହିଁକି ?''

''ସେଥିପାଇଁ ବୋଧହୁଏ ପ୍ରଥମରୁ ମୁହଁ ଫୁଲେଇ ବସିଥିଲି । ସତ କହୁଛି, ମୋର ଜମା ଦୋଷ ହୋଇନି ; କଣ କରିବି କୁହନ୍ତୁ ତ, ଏଠି ବି ଗୋଟାଏ ବିପଦ ଆସି ପହଞ୍ଚିଛି !"

''ବିପଦ ? କି ବିପଦ ?"

''ହେରାଟରେ ଯାହା ସବୁ ଘଟେ, ସେଇଆ ; ସେଠାରେ ଛତିଶି ଟୋକାମାନେ ଚଟି ଦେଉଥିଲେ, ଏଠି ଗୋଟାଏ ଲୋକ ଆସି ଆମ ଘରେ ପ୍ରତିଦିନ ସଞ୍ଜ ସକାଳେ ଧାରଣା ଦେଇ ବସୁଛି ।"

''ଆଶ୍ଚର୍ଯ୍ୟ । ସେ ଦୁର୍ଗ ଭିତରକୁ ଆସେ କିପରି ?"

''ବାପାଙ୍କର ବନ୍ଧୁ ବୋଲି କହି । ସେ ଲୋକଟା ହେରାଟରେ ବି ବାପାଙ୍କ ପାଖକୁ ଥରେ ଦୁଇଥର ଆସିଥିଲା । ସେଠାରେ କହୁଥିଲା ସେ ତୁମର ବନ୍ଧୁ ; ଏଇନେ କହୁଛି ଏଠି ତାର କେହି ଚିହ୍ନାଲୋକ ନାହାନ୍ତି । ଆସୁଛି, ବାପାଙ୍କୁ ଟଙ୍କାପଇସା ଦେଇ ମଦ ଖୁଆଇ ମାତାଲକରି ରଖୁଛି ।"

"କେବଳ ସେତିକି ନା, ତା ବିଷୟରେ ଆଉ କିଛି ଜାଣିଛ ?"

"ଲୋକଟା ଅତି ଖରାପ ।"

''ଗୁପ୍ତଚର ହୋଇ ଆସିନାହିଁ ତ ? କଏଦୀମାନେ କଣ ସବୁ କରୁଛନ୍ତି ଜାଣିବା ଲାଗି ଆସୁଥିବ । ବୋଧହୁଏ ଜେଲର୍ ଓ ରକ୍ଷୀମାନେ କିପରି କାମ କରୁଛନ୍ତି ତାହା ଲକ୍ଷ୍ୟ କରୁଛି ।"

''ନା ମି ! ତା ମତଲବ ଅଲଗା ; କହିଲି ପରା... ।"

"ଓ଼ଃ, ତାହେଲେ ସେ ତୁମକୁ ବିବାହ କରିବାକୁ ଚାହେଁ । ଲୋକଟା ଦେଖିବାକୁ ନିଶ୍ଚୟ ବିଳକ୍ଷଣ ସୁନ୍ଦର ହୋଇଥିବ ।" ଈର୍ଷାନ୍ୱିତ ହୋଇ କର୍ଣ୍ଣେଲ୍‌ସ୍ମିଥ୍ ପଚାରିଲେ ।

"ଧେତ୍ତ ! ପଚିଶ ବର୍ଷର ଚନ୍ଦାମୁଣ୍ଡିଆ ବୁଢ଼ାଟା ; କିଏ ତାକୁ ବାହା ହେବ ? ଆପଣଙ୍କର କି କଳ୍ପନା ! ଖରାପ ଚରିତ୍ରର ବୁଢ଼ାଟେ । ତାର ଇଚ୍ଛା ଗୋପନରେ ମତେ କିଛି ଗୋଟାଏ କଥା କହିବ ।"

"କଣ କହିଲା କି ?"

"କାଲି ସନ୍ଧ୍ୟାବେଳେ ମୁଁ ବଗିଚାରେ ଟ୍ୟୁଲିପ ପୋତିବା ସ୍ଥାନଟାକୁ ସଜାଡ଼ୁଥିଲି, ମୋର ମନେହେଲା ଗଛ ଉହାଡ଼ରୁ କିଏସେ ଜଣେ ମୋତେ ଚାହିଁଛି । ପଛେ ବୁଝିଲି, ସେହି ଲୋକ, ମୋର ପିଚ୍ଛା ଧରିଛି ।"

"ତାହାହେଲେ, ରୋଜା, ତୁମର ପ୍ରେମରେ ସେ ପାଗଳ । ତା ନାଁ କଣ ?"

"ଜ୍ୟାକବ ଗିଜେଲ୍‌ସ୍ ; ଆପଣ ଜାଣନ୍ତି ନା କଣ ?" ରୋଜା ପଚାରିଲା ।

"ନା ମୁଁ ଏଭଳି ନାମ ଶୁଣିନି ।"

"ହେଗ୍‌ରେ ସେ ଠିକ୍ କହୁଥିଲା ତାର ନାମ କଅଣଟି ମନେ ପଡ଼ୁନି ।

"ହୁଁ । ଲୋକଟାର ମତଲବ ଖରାପ ନିଶ୍ଚୟ । ସାବଧାନ ହୋଇ ଚଳିବ, ଯୁଗ ଖରାପ ।"

"ସେଇଟା ମୋର କଣ କରିବ ମ ? କହିଲେ ଆପଣଙ୍କ ଟ୍ୟୁଲିପ୍ କିପରି ବଢ଼ୁଛି ?"

"ଚମତ୍କାର ଭାବରେ ବଢ଼ୁଛି ରୋଜା ; ଆଜି ସକାଳେ ମୁଁ ମାଟି ଉଖାରି ଦେଖିଛି, ପୁଆରୁ ଗଜା ବାହାରିଲଣି ।"

"ମୋ ପୁଅଟା ମୁଁ କେବେ ଲଗାଇବି ?" ରୋଜା ପଚାରିଲା ।

"ଠିକ୍ ସମୟ ହେଲେ ମୁଁ କହିବି ; କିନ୍ତୁ ରୋଜା ଅନ୍ୟ କାହାରକୁ ସେ ବିଷୟ କହିବ ନାହିଁ । ଏ ଗୋଟାଏ ଗୋପନ କଥା—ତୃତୀୟ ପୁଆଟି କେଉଁଠି ରଖିଛ ।"

"ଆପଣ ସେଉଁ କାଗଜ ପୁଡ଼ିଆରେ ଦେଇଥିଲେ ସେହି ପୁଡ଼ିଆରେ ଅଛି; ମୋ ଲୁଗା ବାକ୍‌ସରେ ଲୁଚାଇ ରଖିଛି ।...ଏଁ କିଏସେ ଆସୁଛି ନା

କଣ ? ଶିଡ଼ିରେ କାହାର ପାଦଶବ୍ଦ ଶୁଭିଲା ଦେଖେଁ ।" କହି ଗ୍ରେକା ଶିଡ଼ିତଳକୁ ଗ୍ରହିଁଲା; କିନ୍ତୁ କାହାର ଦେଖା ମିଳିଲା ନାହିଁ । ତାର ଫେରିବାର ବେଳ ହୋଇଯାଇଥାଏ, ସେ ଫେରିଗଲା ।

ତା ପରଦିନ କଥା । ସକାଳବେଳା ଗପ କରୁକରୁ କ୍ୟାକ୍‌ବ ଗ୍ରାଇଫସ୍‌କୁ କହିଲା, "ଜେଲର୍ ସାହେବ, ଆପଣଙ୍କର ସେ କର୍ଣ୍ଣେଲିୟସ୍ ଭ୍ୟାନ୍ ବାର୍ଲି କଏଦୀଟି କିପରି ଅଛି ? ଆଉ କିଛି ଷଡ଼ଯନ୍ତ୍ର କରୁନାହିଁ ତ ?''

ମଦ ଗ୍ଲାସଟା ଟେକୁ ଟେକୁ ଗ୍ରାଇଫସ୍ କହିଲା, "କରିବ କଣ ? ମୁଁ ସବୁବେଳେ ତା' ପ୍ରତି ସତର୍କ ଦୃଷ୍ଟି ରଖିଛୁ ।''

''ପଢ଼ୁଆ ଲୋକଙ୍କୁ ବିଶ୍ୱାସ ଅଛି ? କହୁଥିଲେ ପକ୍ଷୀ ଆକାଶର ପାରିଙ୍କୁ ଆଣି ଘରେ ପୋଷା ମନେଇଥିଲା ; ଟିକିଏ ଭଲକରି ତା ବଖରାଟା ଖାନତଲାସ କରିବେ ।"

ତା ପରଦିନଠାରୁ ଗ୍ରାଇଫସ୍ କର୍ଣ୍ଣେଲିୟସ୍‌ଙ୍କ କୋଠରିକୁ ଅସମୟରେ ଆସି ଭିତରଟା ତନ୍ନତନ୍ନ କରି ତଲାସ କରିବାକୁ ଲାଗିଲା । କର୍ଣ୍ଣେଲିୟସ୍ ମନେ ମନେ ପ୍ରମାଦ ଗଣି ଟ୍ୟୁଲିପ୍ କୁଣ୍ଡଟାକୁ ଆଜି ଏ କୋଣରେ ତ କାଲି ସେ କୋଣରେ ଲୁଗ୍ରଇ କୌଣସିମତେ ଗ୍ରାଇଫସ୍‌କୁ ଠକିବାକୁ ଲାଗିଲେ । ଦିନେ କର୍ଣ୍ଣେଲିୟସ୍ ଫୁଲକୁଣ୍ଡଟାକୁ କୋଠରି ଭିତରେ ପଡ଼ିଥିବା ଖଟିରେ ଥୋଇ, ଗଛଟି କେତେବଡ଼ ହୋଇଛି ଦେଖୁଛନ୍ତି, ହଠାତ୍ ଜଳକବାଟର ଦ୍ୱାର ଖୋଲିଗଲା । ଗ୍ରାଇଫସ୍ କୁଣ୍ଡଟାକୁ ସ୍ପଷ୍ଟ ଦେଖିପାରି ଧଡ଼୍‌ଧାଡ଼୍ କରି କବାଟ ଖୋଲି କୋଠରି ଭିତରକୁ ପଶିଗଲା । "ଏଇଟା କଣ'' କହି ଗର୍ଜନ କରି ସେ ଟାଣିଆଣିଲା କୁଣ୍ଡଟାକୁ ।

"ହେ, ହେ, ସେଥିରେ ଲାଗନ୍ତ," କହି କର୍ଣ୍ଣେଲିୟସ୍ କୁଣ୍ଡଟାକୁ ଛଡ଼ାଇ ଆଣିଲେ ।

"ଏଁ, ସଇତାନ ! ମୋ ସାଙ୍ଗରେ ଧସ୍ତାଧସ୍ତି କରିବାକୁ ବି ତୋର ସାହସ ! କିଏ ଅଛ ରେ, ଧର, ଧର ତାକୁ ।''

ସଙ୍ଗେ ସଙ୍ଗେ ଦୁଇଜଣ ପ୍ରହରୀ ଦୌଡ଼ି ଆସି ବନ୍ଦୀ ହାତରୁ କୁଣ୍ଡଟା ଛଡ଼ାଇଆଣିଲେ ।

"ଏଁ ? ଏ ଛେଳିଆଟା ଏ ଭିତରକୁ କେଉଁ ସଇତାନ୍ ଆଣିଲା ? ମାଟିଭିତରେ କଣ ଲୁଗିଛନ୍ତି ଦେଖି, କହି ଗ୍ରାଇଫସ୍ ମାଟିଗୁଡ଼ାକ ଆଡ଼େଇ ପକାଇଲା ।

"କିଛି ନାହିଁ, କିଛି ନାହିଁ । ସାବଧାନ, ଫୁଆର ଗଜାଟା ଭାଙ୍ଗିଯିବ ! ଭାଙ୍ଗିଯିବ କହୁଛି !!"—କର୍ଣ୍ଣେଲିୟସ୍ ପାଟିକଲେ । ସେତେବେଳକୁ ଗ୍ରାଇଫସ୍ ଫୁଆଟିକୁ ବାହାର କରି ତଳେ ଫୋପାଡ଼ି-ଦେଲା ।

"ଓଃ, ମୋ ଟ୍ୟୁଲିପ୍— !" ବୋଲି ଚିତ୍କାର କରିଉଠିଲେ କର୍ଣ୍ଣେଲିୟସ୍ । ଗ୍ରାଇଫସ୍ ଫୁଆଟିକୁ ଜୋତାରେ ଦଳି ଚକଟି ଛତ୍ର କରିଦେଲା । କର୍ଣ୍ଣେଲିୟସ୍ ତାକୁ ମାରି ନମାରି ହୋଇ ଧସ୍ତାଧସ୍ତି ଆରମ୍ଭ କରିଦେବା ବେଳକୁ ରୋଜା କେଉଁଠି ଥିଲା, ଦୌଡ଼ିଆସି ଡାକ ପକାଇଲା, "ବାପା, ବାପା, ଗୋଟିଏ ଟ୍ୟୁଲିପ୍ କନ୍ଦାଟା ଲାଗି ତୁମେ ଏପରି ହେଉଛ ?"

ଗ୍ରାଇଫସ୍ ବିଜୟଗର୍ବରେ ହସି ହସି ଛତ୍ର ହୋଇ ପଡ଼ିଥିବା ଫୁଆଟିକୁ ଉଠାଇ ଫୋପାଡ଼ି ଦେବାବେଳେ ରୋଜା କର୍ଣ୍ଣେଲିୟସ୍‌ଙ୍କୁ ଚୁପ୍ କରି କହିଦେଲା, "ଆପଣ ଶାନ୍ତ ହୁଅନ୍ତୁ ; ମୁଁ କାଲି ଆଉ ଫୁଆଟା ଲଗାଇଦେବି ।"

"ଆଚ୍ଛା, ତୋର ଏଠି କି କାମ କହିଲୁ ? ଚାଲ ଘରକୁ ।" କହି ଗ୍ରାଇଫସ୍ ରୋଜାକୁ ନେଇ କବାଟ ବନ୍ଦ କରି ଚାଲିଗଲା ।

ସେଦିନ ଉପରବେଳା ଜ୍ୟାକବ୍ ଯେତେବେଳେ ଶୁଣିବାକୁ ପାଇଲା ଯେ ଗ୍ରାଇଫସ୍ ଗୋଟାଏ ଟ୍ୟୁଲିପ୍ ଫୁଆକୁ ଦଳି ଚକଟି ଦେଲା, ସେତେ-ବେଳେ ତା ରାଗ ଦେଖେ କିଏ । ଗ୍ରାଇଫସ୍ କହିଲା, "ଆହେ, ଟ୍ୟୁଲିପ୍ ଫୁଆ ଅପୂର୍ବ ହୋଇଛି ? ବଜାରକୁ ଗଲେ ହଜାର ଫୁଆ ମିଳିବ ।"

"ତୁମେ ଜାଣିନା, ଏ ଗୋଟାକ ସହିତ ସେ ହଜାରଟା ସମାନ ନୁହେଁ ।"

ରୋଜା କହିଲା, "ଏ ଗୋଟିକ ଅତି ମୂଲ୍ୟବାନ୍ ଫୁଆ, ନା ?"
ଜ୍ୟାକବ ପଚାରିଲା, "ମୂଲ୍ୟବାନ । ତୁମେ ତା'ହେଲେ ଜାଣିଛ ?"



ରୋଜା କହିଲା, "ନା, ମୁଁ କିଛିର ଜାଣିନି । ଆପଣଙ୍କୁ ପଚାରୁଛି ।"

"ଓଃ ପଚାରୁଛ !" ଜ୍ୟାକବ ଆଖିରେ କୁଟିଳତା । "କ'ଣ ଚାରୋଟିଯାକ ପୁଆ ନଷ୍ଟ କରିଦେଲେ ?" ସେ ଗ୍ରାଇଫସ୍‌କୁ ପଚାରିଲା ।

ଗ୍ରାଇଫସ୍ ମଦଗ୍ଲାସଟା ଉଠାଇ ଉଠାଇ ସନ୍ଦିଗ୍ଧ ହୋଇ କହିଲା, "ଆପଣ କିପରି ଜାଣିଲେ ଚାରୋଟି ପୁଆ ଥିଲା ବୋଲି ?"

ହସି ହସି ଜ୍ୟାକବ କହିଲା, "ହେ ହେ, ଟ୍ୟୁଲିପ୍ କନ୍ଦାରୁ ପରା ତିନୋଟି ପୁଆ ବାହାରେ—ସେଥିପାଇଁ ପଚାରୁଥିଲି । ଜେଲର୍ ସାହେବ, ଯଦି ସେ ବନ୍ଦୀର ପୋଷାକପତ୍ର ତଲାସ କରିବେ, ତେବେ ଆଉ ଦୁଇଟା ପୁଆ ନିଶ୍ଚୟ ମିଳିବ । ତେବେ ବଡ଼ରା ଶ୍ରଦ୍ଧାରେ ଗୋଟାଏ କାମ କରୁଥିଲି, କରୁ···।" ରୋଜା ଦେଖିଲା ଜ୍ୟାକବ ଏହି କଳା ଟ୍ୟୁଲିପ୍ ବିଷୟ ନିଶ୍ଚୟ ଜାଣିଛି । ବୋଧହୁଏ ଏହି ଟ୍ୟୁଲିପ୍ ପୁଆ ନେବା ଲାଗି ହିଁ ସେ ଆସିଛି । ସେ ଟେବୁଲ ପାଖରୁ ଉଠି ଭିତରକୁ ଚାଲିଗଲା । ରାତି ନଅଟାରେ ଦୁଇ-ବନ୍ଧୁଙ୍କର ପୁଣି ସାକ୍ଷାତ ହେଲା । ଜ୍ୟାକବ ବିଷୟ ନେଇ ରୋଜା ମନରେ ଯେଉଁ ସନ୍ଦେହ ଜାଗ୍ରତ ହୋଇଥିଲା, ତାହା କର୍ଣ୍ଣେଲିୟସ୍‌ଙ୍କୁ ଶୁଣାଇଲା ।

କର୍ଣ୍ଣେଲିୟସ୍ କହିଲେ, "ଠିକ୍ ସନ୍ଦେହ କରିଛ । ଏ ଲୋକ ନିଶ୍ଚୟ ମୋର ଟ୍ୟୁଲିପ୍ ଚାଷ ବିଷୟରେ ଜାଣେ; ତେଣୁ ସେ ହେଗ୍‌ଠାରୁ ମୋ ପଛରେ ଲାଗିଛି । ତୁମେ ସାବଧାନ ହୁଅ ରୋଜା ! ସେ କିଣ ସତରେ ତିନୋଟି ପୁଆ କଥା କହିଲା ?"

"ହଁ । ପୁଣି କହିଲା, ତୁମ ପୋଷାକପତ୍ର ଖାନ୍‌ତଲାସ କଲେ ବାକି ଦୁଇଟି ପୁଅ ନିଶ୍ଚୟ ମିଳିବ ।"

"ଏଁ ? କି ସଇତାନ୍ !!······ଆଚ୍ଛା, ଗୋଟାଏ କାମ କଲେ ସବୁ ସନ୍ଦେହ ତୁଟିଯିବ ।"

"କ'ଣ ?"

"କାଲି ସନ୍ଧ୍ୟାରେ, ତୁମେ ଚୁପ୍ କରି ବଗିଚାକୁ ଯାଇ ଟ୍ୟୁଲିପ୍ ପୁଆ ପୋତିବାର ଛଳନା କର । ସେ ତୁମ ପଛେ ପଛେ ଲାଗିଛି । ତେଣୁ ସେ ନିଶ୍ଚୟ ପୁଆ ଚୋରାଇ ନେବା ଲାଗି ବଗିଚାରେ ପଶିବ । ତୁମେ ପୁଆ ପୋତିବାର ଅଭିନୟ କରିସାରି ତୁମ କୋଠରି ଝରକା ଦେଇ ବଗିଚାକୁ

ଗୁହଁ; ଦେଖାଯାଉ ସେ କ'ଣ କରୁଛୁ ।"

"କଣ ସେ ମାଟି ଖୋଳି ପୁଆ ଗ୍ରେଇ ନେବାକୁ ବ ଚେଷ୍ଟା କରିବ ? ମୋ ପାଖରେ କଳା ଟ୍ୟୁଲିପ୍ ଅଛୁ ବୋଲି ସେ କାହିଁକି ସନ୍ଦେହ କରିବ ଯେ ?"

"ତୁମେ ବଡ଼ ସରଳ, ରୋଜା ! ମଣିଷ କେତେ ନୀଚ ହୋଇପାରେ ତୁମେ ବୁଝିପାରିବ ନାହିଁ । ଆଚ୍ଛା, ସେଦିନ ତୁମେ କହୁଥିଲ ନା, ତୁମେ ଟ୍ୟୁଲିପ୍ ଲଗାଇବା ଲଗି ମାଟି ସଜାଡୁଥିବାବେଳେ ଜ୍ୟାକବ ଲୁଚି ଲୁଚି ତୁମ ପଛରେ ବଗିଚାରେ ପଶିଥିଲା ?"

"ହଁ ତ ।"

"ସେ ତୁମର ପ୍ରେମଲାଳସାରେ ତୁମ ପିଛା ଧରିନଥିଲା ।"

"ତାହାହେଲେ ?"

"ମୋର କଳା ଟ୍ୟୁଲିପ୍ ପୁଆ ଲୋଭରେ । ହଁ ହଁ, ମୋର ଟ୍ୟୁଲିପ୍ ପୁଆ ପାଇବା ଆଶାରେ ସେ ତୁମ ପିଛା ଧରିଥିଲା ।"

"ଠିକ୍ କଥା କହୁଛନ୍ତି ।"

"ହଁ ରୋଜା, ମୋର ସାଧନାର ସିଦ୍ଧିକୁ ଲୁଣ୍ଠନ କରିବା ହିଁ ତାର ଏକମାତ୍ର ଉଦ୍ଦେଶ୍ୟ । ତେଣୁ ମୁଁ ଯାହା କହିଲି ମନେରହିଲା ତ ? ତାକୁ ଟିକିଏ ପରୀକ୍ଷା କର; ମୋର ବିଶ୍ୱାସ, ମୁଁ ଠିକ୍ ସନ୍ଦେହ କରୁଛି । ରୋଜା, ତୁମେ ଯଦି ଟିକିଏ ଅସାବଧାନ ହେବ, ତେବେ ମୋର ସବୁ ସ୍ୱପ୍ନ ମାଟିରେ ମିଶିଯିବ, ବୁଝିଲ ?"

"ଓଃ, ଆପଣ ତାହାହେଲେ ଆପଣଙ୍କର କଳା ଟ୍ୟୁଲିପ୍‌କୁ ଏତେ ଭଲ ପାଆନ୍ତି !"

"ପ୍ରାଣ ଦେଇ ଭଲପାଏ ରୋଜା, ସମସ୍ତ ଅନ୍ତର ଦେଇ ଭଲପାଏ । ତୁମେ ଭାବିପାର ଗୋଟାଏ ସାଧାରଣ ଫୁଲର ପୁଆ ପ୍ରତି ଏତେ ମମତା କାହିଁକି ? କିନ୍ତୁ ମୁଁ ଭାବେ ସେଥିରୁ ଗୋଟିଏ ପୁଆ—ଗୋଟିଏ ମାଣିକ, ସାତରାଜାର ଧନ । ସେ ସଇତାନ ଯେ କେତେବେଳେ କଣ କରି ତାକୁ ଘେଟ୍ଟିଇ ନେବ, ତୁମେ ଜାଣିପାରିବ ନାହିଁ । ରୋଜା, ତୁମେ ହିଁ ମୋର

ଏକମାତ୍ର ସହାୟ । ଜଗିରହ, ଦିନ ରାତି ମୋ ଟ୍ୟୁଲପ୍ ପୁଅକୁ ଜଗିରହ । ସବୁ ଦେଖ, ଜ୍ୟାକବ ତୁମ କୋଠରିଆଡ଼େ ଆଖି ପକାଇଲାଣି, କମ୍ପା ତୁମ ବାପା ସନ୍ଦେହ କଲେଣି, ତେବେ ତୁମେ ବରଂ ମତେ ଦେଖିବାକୁ ନଆସ; ପୁଅକୁ ଜଗି ରହ ରୋଜା, ପୁଅକୁ ଜଗିରହ, ଶିଶୁ ସନ୍ତାନକୁ ତାର ମା' ଯେପରି ଜଗିରହେ, ଠିକ୍ ସେହିପରି ।"

"ଓଃ ! ଏତେ ଦିନକେ ବୁଝିଲି ।" ଦରଦଭରା କଣ୍ଠରେ ରୋଜା କହିଲା ।

"କଣ ବୁଝିଲ, ରୋଜା ?"

"ଟ୍ୟୁଲପ୍ ମୋହ ଆପଣଙ୍କ ହୃଦୟକୁ ଏପରି ଅଧିକାର କରିଛି ଯେ ଅନ୍ୟ କାହାରି ମୋହ ସେଠାରେ ସ୍ଥାନ ପାଇବ ନାହିଁ ।"...ରୋଜା ଆଖିରୁ ବୋହି ଆସିଥିଲା ଦୁଇଧାର ଅଭିମାନର ଲୁହ । ତାର ଅନ୍ତର ଫଟାଇ ଉଚ୍ଛୁଳି ଆସିଲା ବ୍ୟର୍ଥତାର କୋହ । କର୍ଣ୍ଣେଲିୟସ୍‌ଙ୍କ ମୁହଁରୁ କୌଣସି କଥା ବାହାରିବା ପୂର୍ବରୁ ସେ ସେଠାରୁ ଦୌଡ଼ି ଚାଲିଗଲା ।

କର୍ଣ୍ଣେଲିୟସ୍‌ଙ୍କ ମନର ଶାନ୍ତି ଟିକକ ନଷ୍ଟ ହୋଇଗଲା । ରୋଜା ତାହାହେଲେ ଭୁଲ୍ ବୁଝିଲା ? ସେ ଅଭିମାନ କରି ଚାଲିଗଲା ? ସତରେ କଣ ସେ ରୋଜାକୁ ଟ୍ୟୁଲପ ଅପେକ୍ଷା କମ୍ ଭଲପାଆନ୍ତି ? ନା, କାଲି ଆସିଲେ, ତାକୁ ଅନ୍ତର ଖୋଲି ସବୁ କଥା ବୁଝାଇଦେବାକୁ ପଡ଼ିବ—ନା ରୋଜା, ମତେ ଭୁଲ୍ ବୁଝନା, ତୁମେ ହିଁ ମୋର ହୃଦୟ ଅଧିକାର କରିଛ । ତୁମେ ହିଁ ମୋର ସବୁ । ଟ୍ୟୁଲପ୍ ଗୋଟିଏ ମାୟାର ମୋହ । ତୁମେ କିନ୍ତୁ ମୋର ସତ୍ୟ, ମୋର ପ୍ରିୟତମା । ଏହିପରି ଭାବୁ ଭାବୁ କର୍ଣ୍ଣେଲିୟସ୍‌ଙ୍କର ରାତି ପାହିଗଲା । ଆଖିରେ କପା ବି ପଡ଼ିଲା ନାହିଁ ।

ରୋଜା କୌଣସି ଦିନ ଦିନବେଳେ ଆସେ ନାହିଁ; କାଳେ ସେଦିନ ଆସିବ ଭାବି କର୍ଣ୍ଣେଲିୟସ୍ ତା ପଥକୁ ଚାହିଁ ବସିଲେ । ଗ୍ରାଇଫସ୍ ତାଙ୍କର ଖାଦ୍ୟ ଆଣିଦେଲା । ଚିନ୍ତାକୁଳ କର୍ଣ୍ଣେଲିୟସ୍ ଅସହାୟଙ୍କ ପରି ପଡ଼ିରହିଲେ । ଗ୍ରାଇଫସ୍ ଭାବିଲା ଲୋକଟା ସାବାଡ଼ ହୋଇଗଲା । ଦିନ ଯାଇ ସନ୍ଧ୍ୟା ହେଲା । କର୍ଣ୍ଣେଲିୟସ୍‌ଙ୍କ ବ୍ୟାକୁଳତା ବଢ଼ିଗଲା । କେତେବେଳେ

ନଅଟା ବାଜିବ, ସେଥିଲାଗି ସେ ପ୍ରତୀକ୍ଷା କରି ରହିଲେ । ଠନ୍ ଠନ୍ ହୋଇ ନଅଟା ବାଜିଲା ଦୁର୍ଗ ଘଣ୍ଟାରେ । ଏଥର ଯୋଜାର ଆସିବା ବେଳ । କର୍ଣ୍ଣେଲସ୍ୱପ୍ ଝରକା ପାଖରେ ଯାଇ ଠିଆହେଲେ । ସେ ଆସୁ ଆସୁ ତାର ହାତ ଧରି କ୍ଷମା ମାଗିବେ, ମାନଜୀର ଅଭିମାନ ଦୂର କରିବେ । ସେ ପୁଣି ହସି ହସି କଥା କହିବ — କିନ୍ତୁ ନା, ସେ ରାତିରେ ବି ଯୋଜା ଆସିଲା ନାହିଁ । କର୍ଣ୍ଣେଲସ୍ୱପ୍‌ଙ୍କ ମନ ଭିତରେ ବୋହିଗଲା ଚିନ୍ତାର ଝଡ଼ । ଯୋଜାର ଦେହ ଖରାପ ନା କଣ ? ନା ଟ୍ୟୁଲିପ୍ ଉପରେ କିଛି ବିପଦ ପଡ଼ିଲା ? ଯାହାହେଲେ ବି ଟିକିଏ ଆସି ସବୁ କଥା ଖୋଲି କହନ୍ତା ନାହିଁ ନା ? କଥାଟା ଜାଣିଗଲେ ମନଟା କେତେ ହାଲୁକା ନ ଲାଗନ୍ତା ? ରାତି ପାହିଗଲା ଭାବି ଭାବି ।

ତେଣେ ଯୋଜା କିନ୍ତୁ ସ୍ଥିର କରିସାରିଛି ସେ ଆସିବ ନାହିଁ । ମନର ବ୍ୟାକୁଳତାକୁ ଦମନ କରିବା ଲାଗି ସେ ଖାତା ପେନ୍‌ସିଲ ନେଇ ପଢିବାକୁ ବସିଛି, ସେ ଭଲକରି ଲେଖାପଢ଼ା ଶିଖିଲେ ଉପକାର ଅଛି । କର୍ଣ୍ଣେଲସ୍ୱପ୍ ଜଣେ ବନ୍ଦୀ, ଟ୍ୟୁଲିପ୍-ରସିକ; ସେ ତାଙ୍କର ଫୁଲ ନେଇ ପାଗଳ । ଫୁଲ ହିଁ ତାଙ୍କ ଜୀବନର ସବୁ କିଛି । ତାଙ୍କ ହୃଦୟରେ ପ୍ରଥମେ ଟ୍ୟୁଲିପ୍ ଫୁଲର ସ୍ଥାନ; ତା'ପରେ ଅନ୍ୟମାନଙ୍କର । ଯୋଜା ଏପରି ଦ୍ୱିତୀୟ ସ୍ଥାନ ନେଇ କାହାର ହୃଦୟରେ ରହିବାକୁ ଚାହେଁନା ।

ତା'ପରଦିନ ରାତିରେ ବି ଯୋଜା ଆସିଲା ନାହିଁ, ଏହିପରି ଭାବରେ ସପ୍ତାହଟାଏ ବିତିବାକୁ ବସିଲା । ଗ୍ରାଇଫସ୍ ପ୍ରତିଦିନ ଖାଦ୍ୟ ଆଣିବାବେଳେ ଦେଖିଯାଏ କର୍ଣ୍ଣେଲସ୍ୱପ୍ ବିରସ ବଦନରେ ଶୋଇଛନ୍ତି, ପୂର୍ବ ଦିନର ଖାଦ୍ୟପେୟ ଯେଉଁଠି ରଖିଦିଆଯାଇଥିଲା ସେଇଠି ରହିଛି, ହାତ ବି ବାଜିନାହିଁ ସେଥିରେ । ଦିନେ କର୍ଣ୍ଣେଲସ୍ୱପ୍ ସାହସ କରି ଗ୍ରାଇଫସ୍‌କୁ ପଚାରିଲେ, "ଆଜିକାଲି ଯୋଜା ତ କାହିଁକି ଆପଣଙ୍କ ସହିତ ଆସୁନାହିଁ; ଦେହ ଭଲ ଅଛିଟି ?"

"ହିଁ ହିଁ, ତା' ଦେହପା ଭଲ ଅଛି ।"

କର୍ଣ୍ଣେଲସ୍ୱପ୍‌ଙ୍କର ଦରଦୀ ପ୍ରାଣରେ ଆଘାତ ଲାଗିଲା । ଯୋଜା ଦେହ

ଭଲ ଥାଇ ବି ଆସିନାହିଁ । ତା ନିକଟରେ ସେ କି ଅପରାଧ ନକଲେ ? ତା'ମନରେ କେତେ ବଡ଼ କଷ୍ଟ ନଦେଇଛନ୍ତି ? ନିଜକୁ ଧିକ୍‌କାର କରିବାକୁ ଲଗିଲେ କର୍ଣ୍ଣେଲସ୍ମିଥ୍ । ବିରହ ବେଦନାରେ ଜର୍ଜରିତ ହୋଇ ସେ ବୁଢ଼ା ଶୀର୍ଣ୍ଣ ଅବସ୍ଥାରେ ମୁମୂର୍ଷୁଙ୍କ ପରି ଶେଯରେ ପଡ଼ିରହିଲେ । ଅବସ୍ଥା ଲକ୍ଷ୍ୟ କରି ଦିନେ ଗ୍ରାଇଫସ୍ ତାର କପଟୀ ବନ୍ଧୁ ଜ୍ୟାକବ୍ ସହିତ ମଦ ପିଉ ପିଉ କହିପକାଇଲା, "ବୁଝିଲ, ଆମର ସେ ପଣ୍ଡିତଟା ଏଥର ବିଦାୟ ନେଇଯିବ କି କଣ ?"

"କେଉଁ ପଣ୍ଡିତ ମ ?—କର୍ଣ୍ଣେଲସ୍ମିଥ୍ ଭ୍ୟାନ୍ ବାର୍ଲି ?" ଜ୍ୟାକବ୍ ପଚାରିଲା ।

"ହୁଁ ହୁଁ, ସେହି । ଭଲ ହୋଇଛି; ଗୋଟାଏ ଦାୟିତ୍ୱ କମିଯିବ ମୋ ମୁଣ୍ଡରୁ ।"

"ମାନେ, ତାକୁ କଣ ଆନ୍ତରିକ ବଦଳି କରାଯିବ ?"

"ଆହେ ନାହିଁ ହେ, ବଦଳି !! ଏକାବଦଳିକେ ତ ଜେଲରୁ ଯାଇ ଯମପୁରରେ ପଶିବ ।"

ରୋଜା ସେ ପାଖରେ ବସି କଥାବାର୍ତ୍ତା ଶୁଣୁଥିଲା । ବାପାଙ୍କ କଥା ଶୁଣିବାମାତ୍ରେ, ତାର କଲିଜା ଭିତରଟା କୋରିହୋଇଗଲା । ଗ୍ରାଇଫସ୍ କହିଚାଲିଲା, "କଣ ହୋଇଛି କେଜାଣି, ସାତଦିନ ହୋଇଗଲା, ନା ରୁଟି ନା ପାଣି କିଛି ପାଟିରେ ଦେଉନି । ବିଛଣାରେ ପଡ଼ି ମଲାଙ୍କ ପରି କୁନ୍ଥୁକୁନ୍ଥୁ ହୋଇ ଚାହୁଁଛି । କିଛି ଦିନ ହେଲା ଚେହେରାଟା ଟିକିଏ ବାଗେଇ ଆସିଥିଲା । ଏବେନେ ତ ଶୁଖି କଣ୍ଟା ହୋଇଗଲାଣି । ଆଉ ବେଶି ଦିନ ଯିବ ନାହିଁ ମ ।"

ଜ୍ଞାନ ହଜିଗଲା ରୋଜାର । ବସିଥିବା ସ୍ଥାନରେ ଟଳି ପଡ଼ୁ ପଡ଼ୁ କୌଣସିମତେ ଉଠି ସେ ନିଜ କୋଠରି ଭିତରକୁ ଚାଲିଗଲା । ମର୍ମାହତ ହୋଇ ଶେଯରେ ପଡ଼ିଯାଇ ସେ ମନେ ମନେ କହିଲା, "କର୍ଣ୍ଣେଲସ୍ମିଥ୍ ତାହାହେଲେ ଆତ୍ମହତ୍ୟା କରିବାକୁ ବସିଛନ୍ତି । କଳା ଟ୍ୟୁଲିପ୍‌ର ଖବର ନପାଇ ତାଙ୍କ ମନରେ ଦାରୁଣ ଆଘାତ ଲଗିଛି ।—ମୋ ପାଇଁ ସେ ଏତେ

ଭାବୁ ନଥିବେ, ନଭାବନ୍ତୁ; ମୁଁ କିନ୍ତୁ ତାଙ୍କୁ ଏପରି ହତାଶା ଭିତରେ ମରିବାକୁଦେବି ନାହିଁ । ···ଯାଉଛି ଆଜି···ନା ନା, ମୁଁ ତାଙ୍କର କିଏସେ ଯେ···?"

ଦୁର୍ଜୟ ଅଭିମାନ ରୋଜାର । କିନ୍ତେ ଆଉ ସେ ତାଙ୍କ ପାଖକୁ ଯିବ ନାହିଁ । ଚିଠି ଲେଖି ଜଣାଇଦେବ; ଯେଉଁଥିଲାଗି ସେ ଏତେ ଉଦ୍‌ଗ୍ରୀବ ସେ ଖବରଟା ପହଞ୍ଚାଇ ଦେଲେ ଯଥେଷ୍ଟ । କାଗଜ ପେନ୍‌ସିଲ୍ ନେଇ ସେ ଖଣ୍ଡିଏ ସୁନ୍ଦର ସଂକ୍ଷିପ୍ତ ଚିଠି ଲେଖିଦେଲା—"ଚିନ୍ତା କରନ୍ତୁ ନାହିଁ; ଆପଣଙ୍କର ଟ୍ୟୁଲିପ୍ ଖବର ଭଲ ।"

ପରଦିନ ସକାଳେ କର୍ଣ୍ଣେଲିୟସ୍ ଗ୍ରୀଲ ଦେଖନ୍ତି ତ କବାଟ ତଳେ ଖଣ୍ଡିଏ ଗ୍ରେଟ କାଗଜ ପଡ଼ିଛି । କୌତୂହଳୀ ହୋଇ ସେ କାଗଜ ଖଣ୍ଡିକି ଉଠାଇନେଲେ । ଦେଖିଲେ, ସେଥିରେ ରହିଛି ରୋଜାର ଚିଠି । ତାର ଅକ୍ଷର ଏଥର ସୁନ୍ଦର ହେଲାଣି । କିନ୍ତେ ଆସିନାହିଁ; ଟ୍ୟୁଲିପ ବିଷୟ ଲେଖି ଚିଠି ପକାଇଦେଇ ଯାଇଛି । ଟ୍ୟୁଲିପ୍ ଖବର ଭଲ ଜାଣି କର୍ଣ୍ଣେଲିୟସ୍ ସନ୍ତୁଷ୍ଟ ହେଲେ ସତ; କିନ୍ତୁ ସେହି ଗୋଟିଏ ଧାଡ଼ିର ଚିଠି ଭିତରେ ଯେଉଁ ବ୍ୟଙ୍ଗ ଭରିହୋଇ ରହିଥିଲା, ସେ ବ୍ୟଙ୍ଗଟିକୁ ସେ ଧରିପାରିଲେ । ଦୁଃଖ ହେଲା ମନରେ । ରୋଜା ତାହାହେଲେ ଅସୁସ୍ଥ ନୁହେଁ, ଅସନ୍ତୁଷ୍ଟ । ଗ୍ରାଇଫସ୍ ତାକୁ ଅଟକାଇ ନାହିଁ; ସେ ଜାଣିଶୁଣି ଆସିବା ବନ୍ଦ କରିଦେଇଛି । ବିରହବିଦଗ୍ଧ କର୍ଣ୍ଣେଲିୟସ୍ ରୋଜାର ସାନ୍ନିଧ ଲାଗି, ତାର ଦର୍ଶନ ଲାଗି ଏତେ ବ୍ୟାକୁଳ, ଅଥଚ ରୋଜା ନିଷ୍ଠୁର; ଭଲ ପାଇଛି ଦୂରେଇ ରହିବାକୁ । ଅଭିମାନିନୀ ନାରୀ ଏତେ କଠୋର ହୋଇପାରେ !!

କର୍ଣ୍ଣେଲିୟସ୍‌ଙ୍କ ପାଖରେ ରୋଜାର ପେନ୍‌ସିଲ କାଗଜ ରହିଥିଲା । ସେ ବି ଧାଡ଼ିଟିଏ ଚିଠି ଲେଖିଦେଲେ—

"ଟ୍ୟୁଲିପ୍ ଚିନ୍ତାରେ ନୁହେଁ, ତୁମରି ଅଳୁଚିନ୍ତାରେ ମୁଁ ଅସୁସ୍ଥ ।"

ସନ୍ଧ୍ୟା ହେଲା । ଗ୍ରାଇଫସ୍ ଆସି ବନ୍ଦୀମାନଙ୍କର କୋଠରିଗୁଡ଼ିକୁ ଶେଷ ଥର ଲାଗି ପରିଦର୍ଶନ କରି ଚାଲିଗଲା । ବନ୍ଦିଶାଳା ନୀରବ ହେବାପରେ କର୍ଣ୍ଣେଲିୟସ୍ ଚିଠିଟିକୁ ଝରକା ବାଟଦେଇ ବାରଣ୍ଡା ଉପରେ ପକାଇ-

ଦେଲେ । ତାପରେ ରାତସାରା ସେ ଜାଗିଜାଇ ବସିଲେ, ରୋଜା କେତେବେଳେ ଆସୁଛି ଶୁଣିବା ଲାଗି; ଯେତେବେଳେ ଛପି ଛପି ଆସି ଚିଠି ଗଳାଇଦେଇ ଯାଉଛି, ତାର କିଛି. ଉତ୍ତର ପାଇବା ଲାଗି ବି ସେ ନିଶ୍ଚୟ ରହୁଁଥିବ । ସେ ନିଶ୍ଚୟ ଆସିବ; କିନ୍ତୁ ନା, ରୋଜାର ପାଦଶବ୍ଦ ବା ତାର ପୋଷାକର ଖସ ଖସ ଶବ୍ଦ କିଛି ଶୁଣାଗଲା ନାହିଁ । ରହି ରହି କର୍ଣ୍ଣେଲିୟସ୍‌ଙ୍କର ଆଖିର ପାଣି ମରିଗଲା । ଅଧରାତି ପାର ହୋଇଗଲା । ଦେହ ମୁଣ୍ଡ ଅବସନ୍ନ ହୋଇ ସେ ଯେତେବେଳେ ନିଦରେ ଅଚେତନ ହୋଇଯିବାକୁ ବସିଲେ, ଠିକ୍ ସେତିକବେଳେ ଝରକା ପାଖରେ ଅତି ମୃଦୁ କଣ୍ଠରୁ ଶୁଣାଗଲା, "କାଲି ।"

କାଲି, ଅର୍ଥାତ୍ ସପ୍ତମ ଦିନ ଯାଇ ଅଷ୍ଟମ ଦିନରେ !!

ତା ପରଦିନ ରାତି ଆଠଟାରେ ଦୁର୍ଗ ଘଣ୍ଟାରେ ଆଠଟା ବାଜୁ ବାଜୁ କର୍ଣ୍ଣେଲିୟସ୍‌ଙ୍କର ହୃଦୟ ଅଧୀର ହୋଇ ନାଚିବାକୁ ଲାଗିଲା । ରୋଜାର ପ୍ରତୀକ୍ଷାରେ ସେ ଉତ୍କଣ୍ଠିତ ହୋଇଗଲେ । ଠିକ୍ ରାତି ନଅଟାରେ ଝରକାର କବାଟ ଆସ୍ତେ ଖୋଲିଗଲା । ହାତରେ ମହମବତୀ ଧରି ରୋଜା ଠିଆ ହୋଇଛି ।

"ଆପଣଙ୍କ ଦେହ ଖରାପ, ମିଷ୍ଟର କର୍ଣ୍ଣେଲିୟସ୍ ?"

"ହଁ — ଯାହାର ମନରେ ଶାନ୍ତି ନାହିଁ, ଦେହରେ ସ୍ୱାଚ୍ଛନ୍ଦ୍ୟ ନାହିଁ, ତାର ଦେହ ଖରାପ ନୁହେଁ ତ ଆଉ କଣ ?"

"ଆପଣ ଖିଆପିଆ ଛାଡ଼ି ଦେଇଛନ୍ତି, ବିଛଣାରୁ ଉଠୁନାହାନ୍ତି— ବାପାଙ୍କଠାରୁ ଏସବୁ ଶୁଣି ବଡ଼ ଦୁଃଖ ଲାଗିଲା । ଆପଣଙ୍କର ଅତି ପ୍ରିୟ କନ୍ଦଟି ସମ୍ବନ୍ଧରେ ଆପଣଙ୍କ ମନରୁ ଉତ୍କଣ୍ଠା ଦୂର କରିବା ଲାଗି ତାର କୁଶଳ ସମାଚାର ଲେଖି ଚିଠି ଖଣ୍ଡିଏ ଦେଇଥିଲି ।'

"ପାଇଛି; ଉତ୍ତର ବି ଦେଇଦେଇଛି । ଏତେ ଶୀଘ୍ର ତୁମେ ଲେଖିପଢ଼ି ପାରୁଛ ଜାଣି ଖୁସି ହେଲି ।"

"ଆପଣଙ୍କ ଚିଠି ପାଇ ଆସିଛି । କଣ କଲେ ଆପଣ ସ୍ୱାସ୍ଥ୍ୟ ଫେରିପାଇବେ, ତାହା ବୁଝିବି ।''

କର୍ଣ୍ଣେଲସ୍ମିଥ୍‌ଙ୍କ ମୁହଁରେ ଫୁଟିଉଠିଲା ଗୋଟିଏ କରୁଣ ବ୍ୟଙ୍ଗ, "ମୋ ସ୍ୱାସ୍ଥ୍ୟ ନେଇ ତୁମେ ଏତେ ଚିନ୍ତିତ !''

"ଆପଣ ଦିନରାତି କେବଳ ଟ୍ୟୁଲିପ୍ ସ୍ୱପ୍ନରେ ବିଭୋର । ଏତେ ଚିନ୍ତା, ଏତେ ଆଶଙ୍କା ଭିତରେ ମଣିଷର ସ୍ୱାସ୍ଥ୍ୟ ତ ଭାଙ୍ଗିଯିବ ।''

"ନା ନା, ଜୋକା ଭୁଲ୍ ବୁଝନା । ଟ୍ୟୁଲିପ୍ ନୁହେଁ, କେବଳ ତୁମକୁ ଦେଖିବାକୁ ନପାଇ ତୁମରି ଚିନ୍ତାରେ ମୁଁ ସଢ଼ିଗଲଣି । ଜୀବନର ସ୍ୱାଧୀନତା ହରାଇ ଯେତେ ଦୁଃଖ କରିନାହିଁ, ତାର ଶତଗୁଣ ଦୁଃଖ ଅନୁଭବ କରୁଛି ତୁମକୁ ଦେଖିବାକୁ ନପାଇ । ତୁମକୁ ଦେଖିଲେ, ତୁମଠାରୁ କୁଶଳ ସମାଚାର ଶୁଣିଲେ, ମୋର ସ୍ୱାସ୍ଥ୍ୟ ସ୍ୱୟଂ ଫେରିଆସିବ ।"

ଜୋକା ମୁହଁରେ କରୁଣ ହସ । ସେ କହିଲା, "ଆପଣଙ୍କର ଟ୍ୟୁଲିପ୍‌ର ସମାଚାର କୁଶଳ ନୁହେଁ ।"

"ମାନେ ?"

"ଆପଣ ଯେଉଁ ଆଶଙ୍କା କରୁଥିଲେ ତାହା ଠିକ୍ । ମତେ ପାଇବା ଲୋଭରେ ଜ୍ୟାକବ୍ ଆସିନାହିଁ, ସେ ଗୋଟାଏ ଟ୍ୟୁଲିପ୍ ଚୋର ।"

"ଏଁ ! ଏଁ !! କଣ ସେ ନେଇଗଲା ନା କଣ ?"

''ଶୁଣନ୍ତୁ କହୁଛି । ଜ୍ୟାକବ୍‌ର ପ୍ରକୃତ ଉଦ୍ଦେଶ୍ୟ ଜାଣିବାଲାଗି ଠିକ୍ ଆପଣ କହିଥିବା ପରି କଲି । ସେଦିନ ସନ୍ଧ୍ୟାବେଳେ ସେ ବାପାଙ୍କୁ ମଦ ପିଆଉଛି, ମୁଁ କହିଲି, ବାପା ମୁଁ ଟିକିଏ ବଗିଚାରୁ ଆସେ'—ମାନେ ତାକୁ ଟିକିଏ ଲୋଭ ଦେଖାଇବାଲାଗି ମ ।"

"ବେଶ୍ ବେଶ୍ !"

"ବଗିଚାରେ ପଶିଛି, ଦେଖିଲି ସେ ଚୁପ୍‌କରି ଆସି ଗୋଟାଏ ଗହଳିଆ ଲତା ପଛରେ ଲୁଚି ଠିଆହୋଇଗଲା । ମୁଁ ଚାରିଆଡ଼କୁ ଟିକିଏ ସତର୍କ ଦୃଷ୍ଟି ପକାଇ ମାଟିରେ ଗୋଟାଏ ଗାତକଲି । ତା'ପରେ ଖୁବ୍ ସାବଧାନରେ ପୋଷାକ ଭିତରୁ କିଛି ଗୋଟାଏ ମୂଲ୍ୟବାନ୍ ଜିନିଷ ବାହାର କରିବାର ଅଭିନୟ କରି, ଚଟ୍‌କରି ଖାଲି ହାତଟାକୁ ସେ ଗାତ ଭିତରେ ପୁରାଇ ଉଠାଇ ଆଣିଲି । ଶେଷରେ ଅତି ଯତ୍ନରେ ତା ଉପରେ ମାଟି ଘୋଡ଼ାଇ

ଦେଇ ଘୃଣପତେ ମନ୍ଦାଟିଏ କଲି, ସ୍ଥାନଟିକୁ ସାଉଁଳେଇ ଦେଇ ହାତ ଝାଡ଼ି ସେଠାରୁ ଉଠିଆସିଲି । ତା'ପରେ କିଛି ନଜାଣିବା ପରି ମୁଁ ବଗିଚାରୁ ଉଠିଆସି ଘରକୁ ଫେରିବାର ଉପକ୍ରମ କଲି ।''

"ତୁମକୁ ତ ସୁନ୍ଦର ଅଭିନୟ କରିଆସେ ରୋଜା ?'' ରସିକତା କରି କର୍ଣ୍ଣେଲସ୍ଥସ ଅବଶିଷ୍ଟ କଥା ଶୁଣିବା ଲାଗି ଗୃହିଁ ବସିଲେ ।

"ମୁଁ ଯାଇ ଗୋଟିଏ ହେନା ଲତା ପଛରେ ଲୁଚି ଠିଆହେଲି । ଅଳ୍ପ କିଛି ସମୟ ପରେ ସଇତାନ୍‌ଟା ପାଦ ଚପି ଚପି ବଗିଚାରେ ପଶିଲା । ଠିକ୍ ମୁଁ ଯେଉଁଠି ପୁଆଟି ପୋତିବାର ଅଭିନୟ କରିଥିଲି, ସେ ସ୍ଥାନଟାକୁ ଚଟାପଟ୍ ଖୋଳିପକାଇ ମାଟିଗୁଡ଼ିକ ଆଡ଼େଇ ଖାଲି ଦରାଣ୍ଡିବାକୁ ଲାଗିଲା । ମନେ ମନେ ମୁଁ ବେଜାଏ ହସିଲି । ବିଚରା ବୁଝିପାରିଲା ଯେ ମୁଁ ତାକୁ ଠକି ଦେଲି । ଟିକିଏ ଦାନ୍ତ କଡ଼ମଡ଼ କରି ମୁଣ୍ଡଟା ଝୁଙ୍କାରି ଝୁଙ୍କାରି ସ୍ଥାନଟାକୁ ପୂର୍ବପରି ସଜାଡ଼ି ଦେଇ ସେ ଉଠିଆସିଲା । ସେ ବାପାଙ୍କ ପାଖକୁ ଆସିବାବେଳକୁ ମୁଁ ମୋର ବାଇବେଲ୍ ନେଇ ପଢ଼ୁଥାଏ ।''

"ବାଃ, ବାଃ, ବାଃ; ଚମତ୍କାର ! ସୁନା ଝିଅଟିଏ ତ !! କିନ୍ତୁ ରୋଜା··· ।''

"ଆଉ କିନ୍ତୁ କଣ ?''

"ପୁଆ ଦୁଇଟି ସାବଧାନରେ ରଖିଛ ତ ? ସେ ସଇତାନ କଣ ଏତିକିରେ ହାର ମାନି ଯିବ ?''

"ଯେତେ ବଡ଼ ସଇତାନ ହେଲେ ବି ସେ ଆଉ ଚୋରାଇ ନେଇ ପାରିବ ନାହିଁ,''—ଦୃଢ଼ତାର ସହିତ ରୋଜା କହିଲା ।

"କିପରି ?'' ଉତ୍କଣ୍ଠିତ ହୋଇଗଲେ କର୍ଣ୍ଣେଲସ୍ଥସ ।

"ଗୋଟିଏ ତ ମୋ ଲୁଗା ବାକ୍‌ସରେ ଲୁଚି ହୋଇଛି, ଅନ୍ୟଟି ମାଟିରେ ପୋତା ହେବାର ଛଅଦିନ ହୋଇଗଲାଣି ।''

"ଛଅଦିନ ହୋଇଗଲାଣି !! କେଉଁଠି ରୋଜା ? କିଭଳି ମାଟିରେ ପୋତିଛ ? ଜ୍ୟାକବ୍ କଣ ସେଠାରୁ ଚୋରାଇ ନେଇପାରିବନାହିଁ ?''

ରୋଜା କହିଲା, "ଜ୍ୟାକବ୍ ମୋ ଶୋଇବା ଘରେ ନ ପଶିଲା ଯାଏଁ,

ଟ୍ୟୁଲିପ ଫୁଲଟିକୁ ଦେଖିବାକୁ ବି ପାଇବି ନାହିଁ ।''

''ଓଃ, ତୁମ ଶୋଇବା ଘରେ ? ବେଶ୍, ବେଶ୍ କରିଛ । କୁଣ୍ଡରେ ଲଗାଇଛ କି ? ମାଟି କେଉଁଠୁ ଆଣିଲ ?''

"ବଗିଚାରୁ; ଖତ ସାର ଦେଇ ଯେଉଁ ମାଟି ତିଆରି କରାଯାଇଥିଲା, ସେହି ମାଟି ଦେଇ ଗୋଟିଏ ଶ୍ରେଷ୍ଠ କୁଣ୍ଡରେ ଲଗାଯାଇଛି । ଆଉ କଣ କଣ କରିବାକୁ ହବ କହନ୍ତୁ ତ ?"

"ଆଦର ଓ ଯତ୍ନ ନକଲେ ଟ୍ୟୁଲିପ କଣ ଫୁଟିବ ? ପ୍ରଥମେ ଦେଖ ମୂଷା ଯେପରି ନ ପଶନ୍ତି, ତା ପରେ ବିରାଡ଼ି; ଭାରି ଦୁଷ୍ଟ ସେଗୁଡ଼ାକ, ଥରେ ପରା ମୋର ଗୋଟାଏ ପୁରା ଫସଲ ନଷ୍ଟ କରିଦେଇଥିଲେ । ପୁଣି ସଞ୍ଜ ସକାଳେ ଟିକିଏ ଖରାରେ ରଖିବ ଏବଂ ଶେଷ ପର୍ଯ୍ୟନ୍ତ ଜ୍ୟାକବ୍‌କୁ ଗୋଡ଼େ ଗୋଡ଼େ ଜଗିଥିବ ।''

"ନା, ଆମର ଏଠି ମୂଷା କି ବିରାଡ଼ି ନାହାନ୍ତି, ଆପଣଙ୍କର ଟ୍ୟୁଲିପର ସବୁ ପ୍ରକାର ଯତ୍ନ ନେବି । ଗଛ ଛଡ଼ିସିବା ପରେ ଜ୍ୟାକବ୍ ଆଉ କଣ କରିବ କହୁ !''

"କଣ କହୁଛ ତୁମେ ରୋଜା ! ଲକ୍ଷେ ସୁନା ମୋହରର ଲୋଭ ସେଭଳି ଲୋକଙ୍କୁ ପେଟକଟା ଡକାୟତଠାରୁ ବି ହୀନ କରିଦେବ । ଗଛ କଣ କହୁଛ, ଫୁଲ ଫୁଟିବା ପରେ ବି ସେ ଚୋରାଇ ନେଇଯାଇପାରେ ।''

"ଓଃ, ସତେ ! ଠିକ୍ କହୁଛନ୍ତି; କିନ୍ତୁ ନିଶ୍ଚିନ୍ତ ରହନ୍ତୁ, ଆପଣ ଥରେ କହିଥିଲେ ମାଆ ଯେପରି ଛୁଆର ଯତ୍ନ ନିଏ, ଚାଷୀ ସେପରି ଟ୍ୟୁଲିପର ଯତ୍ନ ନେବା କଥା ଆଜିଠାରୁ ଆପଣଙ୍କର ପ୍ରିୟ ଟ୍ୟୁଲିପ ମୋର ଆଦରର ଝିଅ ହେଲା; ମୁଁ ମୋ ଝିଅର ସବୁ ପ୍ରକାର ଯତ୍ନ ନେବି ।''

"ଧନ୍ୟବାଦ ଧନ୍ୟବାଦ, ରୋଜା; ମୋର ବିଶ୍ୱାସ ତୁମେ ପାରିବ । —ହଁ, କହୁଥିଲି ଫୁଲ ପୋତିବାର ଛଅ ଦିନ ହୋଇ ଗଲାଣି; ଗଛ ବାହାରିନାହିଁ ?''

"ନା, ବାହାରି ନାହିଁ । ମୁଁ ଭାବୁଛି କାଲି ଆଉକୁ ବାହାରି ଯିବ ।''

"ବେଶ୍ । ତାହାହେଲେ କାଲି ମୁଁ କିଛି କୁଶଳ ସମ୍ବାଦ ପାଇବି ।

ଟ୍ୟୁଲିପର କୁଶଳ ଏବଂ ତୁମର କୁଶଳ; କାଲି ଆସିବକି ?'' ଝରକାର ଛଡ଼ ଉପରେ କର୍ଣ୍ଣେଲିୟୁସ୍‌ଙ୍କର ଆଙ୍ଗୁଳି ରୋଜାକୁ ସ୍ପର୍ଶ କଲା ।

"କାଲି ?...କହିପାରୁନାହିଁ । ମୋର କାଲିକି ଅନେକ କାମ ରହିଛି ।''

"ମୋ କାମ କିନ୍ତୁ ଗୋଟିଏ ।''

"ହଁ, କଳା ଟ୍ୟୁଲିପ୍‌ର ପ୍ରେମରେ ବିଭୋର ହେବା ।''

"ନା ରୋଜା, ତୁମର ପ୍ରେମରେ ବିଭୋର ହେବା ହିଁ ମୋର ଏକମାତ୍ର କାମ । ହାୟ ! ସଂସାରରେ ସବୁ ଜିନିଷ ଏହିପରି ବଦଳିଯାଏ ନା ରୋଜା ?''

"ବୁଝି ପାରିଲି ନାହିଁ ।''

"ଅନ୍ୟ କିଛି ଏକ ଆନନ୍ଦରେ ବିଭୋର ହେବା ଲାଗି ତୁମେ ମୋ ପାଖକୁ ଆସିବା ଛାଡ଼ିଦେଲ । ଠିକ୍ କରିଛ; ମୋର ଅଭିଯୋଗ କରିବା ଲାଗି କିଛି ନାହିଁ । ତୁମର ବଶ୍ୟତା ଉପରେ ବା ମୋର କି ଦାବି ଅଛି ?''

ରୋଜାର ଆଖି ଲୁହରେ ଭରିଉଠିଲା । ସେ ପଚାରିଲା, ''ମୁଁ କଣ ଆପଣଙ୍କର ବଶ୍ୟ ନୁହେଁ ?''

"ନିଜକୁ ପଚାର ରୋଜା, ନିଜକୁ ପଚାର । ମତେ ଏଠାରେ ମରଣ-ମୁହଁରେ ପକାଇ ଦେଇ ତୁମେ ତେଣେ ମୁହଁ ଲୁଚାଇ ଦେଲ; ଥରଟାଏ ଦେଖିବା ପାଇଁ ବି ଆସିଲ ନାହିଁ ?''

''କିନ୍ତୁ ମୁଁ ଆପଣଙ୍କର ସୁଖ ଓ ସମ୍ମାନ ଲାଗି ହିଁ ଲାଗିପଡ଼ିଛି । ଆପଣଙ୍କର ଟ୍ୟୁଲିପ୍‌ର ମୁଁ କୌଣସି ଅଯତ୍ନ କରିନାହିଁ ।''

"ମୁଁ ତାହାହେଲେ ସତଟା କହିଦିଏ—ତୁମେ ମୋ ଉପରେ ରାଗିଛ, ଅସନ୍ତୁଷ୍ଟ ହୋଇଛ । ଭାବୁଛ, ମୁଁ ଫୁଲକୁ ହିଁ ଅଧିକ ଭଲପାଏ । କିନ୍ତୁ ଦେଖ ରୋଜା ଦେଖ, ମୋର ହାତ-ପାଦ ଦେଖ । ଦୁର୍ବଳ, କ୍ଷୀଣ ହୋଇ ସବୁ ଥରୁଛି । ମୁଁ ମୁମୂର୍ଷୁ ଅବସ୍ଥାରେ ପହଞ୍ଚିଯାଇଛି; କିନ୍ତୁ ମୋର ହୃଦୟର ପ୍ରତ୍ୟେକ ତନ୍ତ୍ରୀରେ ବାଜିଉଠୁଛି ତୁମର ପ୍ରେମର ବୀଣା । ମୁଁ ସାମାନ୍ୟ କଳା ଟ୍ୟୁଲିପ୍ ପାଇଁ ବଞ୍ଚିନାହିଁ ରୋଜା; ତୁମର ପ୍ରେମ ହିଁ ମତେ

ବଞ୍ଚାଇ ରଖିଛୁ । ଫିଙ୍ଗିଦିଅ, ନଷ୍ଟ କରିଦିଅ ସେ କଳା ଟ୍ୟୁଲିପ୍ ଫୁଲଟିକୁ । ମୁଁ ଏଥିକି ଟିକିଏ ଦୁଃଖ କରିବି ନାହିଁ; କିନ୍ତୁ ରୋଜା, ମୋ ପ୍ରାଣର ରୋଜା ! ତୁମ ପ୍ରେମରୁ ମତେ ବଞ୍ଚିତ କରନାହିଁ ! ମୋର ଏ ହୃଦୟରେ ତୁମ ଭିନ୍ନ ଆଉ କାହାର ସ୍ଥାନ ନାହିଁ ।''

''ଆପଣଙ୍କୁ ବିଶ୍ୱାସ କରିବି ତ ?''

''ତୁମ ଭିତରେ ଆତ୍ମବିଶ୍ୱାସ ଅଛି କି ?''

''କିନ୍ତୁ ଆପଣ ହେଗ୍‌ଠାରେ ଯେଉଁ ଉଇଲ ଲେଖି ଦେଇଥିଲେ ସେହି ଉଇଲ ଅନୁଯାୟୀ ମୁଁ ସବୁବେଳେ ସେହି ସୁନ୍ଦର ଯୁବକଟିକୁ ମନପ୍ରାଣ ଦେଇ ଖୋଜୁଛି ।'' କହୁ କହୁ ରୋଜାର ମୁହଁ ପୋଡ଼ିହୋଇଗଲା ଲାଜରେ ।

''ଅଭିମାନ ଛାଡ଼ ରୋଜା ! କହ, ଏଥର ସବୁଦିନ ଆସିବ ?''

''ଆସିବି, କିନ୍ତୁ ଗୋଟିଏ ସର୍ତ୍ତରେ ।''

''ନିଶ୍ଚୟ । କହନା ତୁମର ସର୍ତ୍ତ ?''

''ଆଉ ତିନିଦିନ ଯାଏ ଆପଣ କଳା ଟ୍ୟୁଲିପ୍‌ର ନାମ ପର୍ଯ୍ୟନ୍ତ ଧରିବେ ନାହିଁ ।''

''ମୋଟେ ଧରିବି ନାହିଁ, ରୋଜା ! ତୁମେ ଯଦି କହିବ, ତେବେ ଜୀବନରେ ଆଉ କୌଣସି ଦିନ ସେ ନାମ ଧରିବି ନାହିଁ ।''

ହସି ହସି ରୋଜା କହିଲା, ''ଯେଉଁଟା ଅସମ୍ଭବ, ସେପରି କଥା ମୁଁ କହିବି ନାହିଁ ।''

## ଆଠ

ବିଚ୍ଛେଦ ପରେ ମିଳନ ମଧୁର ଲାଗେ । ହସଖୁସି ଭିତରେ ପରବର୍ତ୍ତୀ ଦୁଇଟି ରାତି କଟିଗଲା । ରୋଜା ଅବଶ୍ୟ ଉପଲବ୍ଧି କଲା ଯେ ଜ୍ୟାକବ୍ ତାର ଗତିବିଧି ଉପରେ ବରାବର ଲକ୍ଷ୍ୟ ରଖିଛି । ତେଣୁ ରୋଜା ଆଉ ରାତିରେ ବତି ନେଇ ଆସିଲା ନାହିଁ, ପଢ଼ାପଢ଼ିରେ ବ୍ୟାଘାତ ଘଟୁ ପଛେ ଜ୍ୟାକବ୍ ଏହି ଗୋପନ ସମ୍ପର୍କ ନଜାଣୁ । ରୋଜା ନିୟମିତ ଆସିବା

ଫଳରେ ରୁଗ୍‌ଣ ଶୀର୍ଣ୍ଣ କର୍ଣ୍ଣେଲ୍‌ସ୍ମିଥ୍ ସୁସ୍ଥ ଓ ପ୍ରଫୁଲ୍ଲ ହୋଇଉଠିଲେ । ମଝିରେ ମଝିରେ ତାଙ୍କ ପାଟିରୁ ଶୁଣାଗଲା ଯୁବକସୁଲଭ ସଙ୍ଗୀତ । ତୃତୀୟ ଦିନ ହଠାତ୍ ଗ୍ରାଇଫଥ୍ ଆସି କର୍ଣ୍ଣେଲ୍‌ସ୍ମିଥ୍‌ଙ୍କ କୋଠରି ଖାନତଲାସ କରି ବସିଲା । ତାଙ୍କ ଗୀତ ଓ ଶିଶି ଶୁଣି ସେ କହିଲା, "କଣ ଫେର୍ ଚେରେଇଲଣି ? ମୁଁ କିନ୍ତୁ କଡ଼ା ନଜର ରଖିଛି ।''

କର୍ଣ୍ଣେଲ୍‌ସ୍ମିଥ୍ କହିଲେ, "ବୃଥା ବ୍ୟସ୍ତ ହେଉଛନ୍ତି; ମୋ କାମ ଆପଣଙ୍କର କୌଣସି କ୍ଷତି କରିବ ନାହିଁ ।"

ଖାନ୍‌ତଲାସ କରି ଗ୍ରାଇଫଥ୍ ପାଇଲା ଖଣ୍ଡେ ପେନ୍‌ସିଲ ଓ ଦୁଇଖଣ୍ଡ କାଗଜ । ତାର ବ୍ୟସ୍ତତା ଦେଖି କର୍ଣ୍ଣେଲ୍‌ସ୍ମିଥ୍ ହସିଉଠିଲେ । ସେ ଟ୍ୟୁଲିପ୍ ଚୁଆ ନପାଇ ବିରକ୍ତ ହୋଇ ଚାଲିଗଲା । ଦିନକ ପରର କଥା । ରେଜା ଆସି ପହଞ୍ଚୁ ପହଞ୍ଚୁ କହିଲା, "ଜାଣନ୍ତି, ସେ ଉଠିଲାଣି !"

"କିଏସେ ଉଠିଲାଣି ?"

"ମୋ ଝିଅ !"

"ଏଁ !!"

"ହଁ ମ; ତୁମ ଟ୍ୟୁଲିପ୍ ମୋ ଝିଅ ନୁହେଁ ? ମୋର ନିଜର ଝିଅଟିଏ ହେଲେ ଯେପରି ପାଳିବି, ଚୁଆଟିକୁ ମୁଁ ଠିକ୍ ସେହିପରି ପାଳୁଛି ।"

ଆନନ୍ଦ ଗଦ୍‌ଗଦ ହୋଇ କର୍ଣ୍ଣେଲ୍‌ସ୍ମିଥ୍ ପଚାରିଲେ, "ତାହାହେଲେ, ତୁମ ଟ୍ୟୁଲିପ୍ ଝିଅ ବିଷୟରେ ଆଲୋଚନା କରିବାକୁ ତୁମର ଅପତ୍ତି ନାହିଁ ତ ?''

"ନା ।" ମାତୃସୁଲଭ ଗର୍ବ ନେଇ ରେଜା କହିଲା ।

"ଗଜାଟି ସଳଖ ହୋଇ ଉଠୁଛି ?"

"ରକେଟ୍ ପରି ସିଧା ଉଠିଚାଲିଛି ।"

"କେତେ ଉଚ୍ଚ ହେଲାଣି ?"

"ପ୍ରାୟ ଚାରି ସେଣ୍ଟିମିଟର ।"

"ସୁନ୍ଦର ! ଏଥର ଶୀଘ୍ର ଶୀଘ୍ର ବଢିଯିବ । ଯତ୍ନ ନେବାରେ ମୋଟେ ତ୍ରୁଟି କରିବ ନାହିଁ ରେଜା !''

"ଛୁଟି କରିବ ? ମୁଁ ପଣ୍ଡ ବସିଛୁ ଫୁଲଟି ଭଲରେ ଫୁଟିଗଲେ ଲକ୍ଷେ ଗିଲ୍‌ଡ଼ାର ପୁରସ୍କାରଟା ନେଇ ଆପଣଙ୍କର ଉଇଲ ଅନୁଯାୟୀ ମୋ ବାହାଘରଟା କରାଇନେବ ।"

ଆନନ୍ଦବିହ୍ୱଳ ହୋଇ କର୍ଣ୍ଣେଲ୍‌ସ୍ୱପ୍ ପଚାରିଲେ, "ସତ କହୁଛ ରୋଜା ?"

ପ୍ରତିଦିନ, ପ୍ରତି ଘଣ୍ଟାରେ, ପ୍ରତି ମୁହୂର୍ତ୍ତରେ ଟ୍ୟୁଲିପ୍ ବଢିଚାଲିଲା । "ଗଛ ବଢ଼ିଲାଣି ! ପତ୍ର ଖୋଲିଲାଣି !! କଢ଼ ଦେଖାଗଲାଣି !!!"— ପ୍ରତ୍ୟେକ ସନ୍ଧ୍ୟାରେ ନୂଆ ନୂଆ ଖବର ଆସିଲା ।

"କଢ଼ ହେଲାଣି ?"— ଆନନ୍ଦରେ ଅଧୀର ହୋଇଗଲେ କର୍ଣ୍ଣେଲିସ୍ୱପ ।

ହଁ, ପଣ୍ଡ !"

"ଗୋଲଗାଲ ହୋଇଛୁଟି ତେମଁଟା ? ହୃଷ୍ଟପୁଷ୍ଟ ?"

"ସବୁ ଠିକ୍ ଅଛି; ସବୁ ସୁନ୍ଦର ହୋଇଛି ।" ଆତ୍ମଗୌରବ ନେଇ ରୋଜା କହିଲା ।

"ଶୁଭ ସମ୍ବାଦ ! କଢ଼ ଖୋଲିଲାଣି !!"—ଦୁଇଦିନ ପରର ଖବର ।

"ସତେ !!—ରଙ୍ଗଟା ? ରଙ୍ଗ କଣ ?" ଉତ୍କଣ୍ଠାରେ ଅସ୍ଥିର ହୋଇଗଲେ କର୍ଣ୍ଣେଲ୍‌ସ୍ୱପ୍ ।

"ଗା—ଢ଼— ।"

"ବାଦାମୀ ?"

"ତା'ଠାରୁ ବି ଗା—ଢ଼— ।"

"ମାନେ ?"

"ମାନେ, ଯେଉଁ କାଳିରେ ଆପଣଙ୍କୁ ଚିଠି ଲେଖିଥିଲି, ସେ କାଳିଠାରୁ ବି ଗାଢ଼ କଳା ।"

ଆନନ୍ଦରେ ଚିତ୍କାର କରିଉଠିଲେ କର୍ଣ୍ଣେଲିସ୍ୱପ୍, "ଚମତ୍କାର ! ସତ କହୁଛି ରୋଜା, ତୁମ ହାତରେ କିଛି ଗୋଟାଏ ସ୍ୱର୍ଗୀୟ ଯାଦୁ ରହିଛି !—

ଫୁଲଟି ଫୁଟିବାକୁ ଆଉ କେତେଦିନ ଲାଗିବ ?''

"କାଲି ପ'ରଦିନ ଭିତରେ ଫୁଟିଯିବ ।"

"ହୁଁ; ଦୁଇ-ତିନି ଦିନକୁ ଡେରି ହେବ ନାହିଁ ।''

"ଏବଂ ଫୁଲ ପୁରା ଫୁଟିଯିବା ସଙ୍ଗେ ସଙ୍ଗେ ମୁଁ ଫୁଲଟି ତୋଳି ରଖିବ ।" ହସି ହସି ରେଜା କହିଲା ।

''ତୋଳି ଦେବ !!'' ଆତଙ୍କରେ ଆର୍ତ୍ତନାଦ କରିଉଠିଲେ କର୍ଣ୍ଣେଲିୟସ୍ ।

''ନା ନା ରେଜା, ଫୁଲ ଦେହରେ ମୋଟେ ହାତ ଦେବନାହିଁ । ଫୁଲ ଫୁଟିଯିବା ପରେ ଗଛଟିକୁ ବରାବର ଛାଇରେ ରଖିବ । ମୁଁ ତ ଭାଗ୍ୟହୀନ; ମୋର ଏତେ ସାଧନାର ଫଳକୁ ମୁଁ ନିଜ ଆଖିରେ ବି ଟିକିଏ ଦେଖିପାରିବି ନାହିଁ; କିନ୍ତୁ ତୁମେ ଯେପରି କୌଣସି ତ୍ରୁଟି ନକର ! ଫୁଲ ଫୁଟୁ ଫୁଟୁ ହାର୍ଲେମର ପୁଷ୍ପ ପ୍ରଦର୍ଶନୀ ସମିତିକୁ ଚିଠିଲେଖି ଜଣାଇଦେବାକୁ ପଡ଼ିବ ଯେ, ଗାଢ଼ କଳାରଙ୍ଗର ଟ୍ୟୁଲିପ୍ ଫୁଟାଯାଇ ପାରିଛି । ହାଲେମ ଏଠାକୁ ଦେଢ଼ଦିନର ବାଟ ହେବ; ତଥାପି ଟଙ୍କାପଇସା ଟିକିଏ ଖର୍ଚ୍ଚକଲେ ଚିଠିଟା ନେଇଯିବା ଲାଗି କଣ ଭଲ ଲୋକଟିଏ ମିଳିବ ନାହିଁ ?"

"ନିଶ୍ଚୟ ମିଳିବ ।''

"କିନ୍ତୁ ଦେଖ ମୋ ବୋକାମି ! ମୁଁ ତ ବନ୍ଦୀ । ମୋ ପାଖରେ ଟଙ୍କା ପଇସା କାହୁଁ ଆସିବ ? ତୁମ ପାଖରେ ବା ଏତେ ପଇସା···?''

''ହଁ ହଁ, ମୋ ପାଖରେ ଅଛି । ମତେ ବାପା ଯେତେବେଳେ ଯାହା ଦିଅନ୍ତି, ମୁଁ ବାଜେ ଖର୍ଚ୍ଚ ନକରି ଜମାଇ ରଖେ । ତିନିଶହ ଗିଲ୍‌ଡର ଜମାଇଛି ।" ଭରସା ଦେଇ ରେଜା କହିଲା ।

''ତିନିଶହ ଗିଲ୍‌ଡ଼ର ? ସୁନ୍ଦର ! ଆଚ୍ଛା, ତୁମେ ନିଜେ ଗଲେ ?''

"ମୋର ଯିବାରେ ଆପତ୍ତି ନାହିଁ; କିନ୍ତୁ ମୋର ଭୟ, ମୁଁ ଚାଲିଗଲେ ଆପଣ ଖିଆପିଆ ଛାଡ଼ିଦେବେ; ପୁଣି ଦେହ ଖରାପ ହୋଇଯିବ ।''

"ସତ କହୁଛ, ରେଜା ତୁମକୁ ଦିନେ ନଦେଖିଲେ ମୁଁ ପାଗଳ ହୋଇଯିବି । ଲୋକ ହିଁ ପଠାଅ । ଟାଣୁଆ କରି ଚିଠି ଲେଖି ସମିତିର

ସମ୍ପାଦକଙ୍କୁ ଏଠାକୁ ଡାକି ଆଣିବା; ଏ ତ କିଛି ସାମାନ୍ୟ କଥା ନୁହେଁ । …କିନ୍ତୁ…।'' କେଉଁ ଏକ ଅଜଣା ଆଶଙ୍କାରେ ଅଟକିଗଲେ କର୍ଣ୍ଣେଲିୟସ୍ ।

''ଆଉ କିନ୍ତୁ କଣ ?'' ରୋଜା ପଚାରିଲା ।

"କଳା ଟ୍ୟୁଲିପ୍ ହେବ ବୋଲି ଆମେ ଏତେ ନାଚୁଛୁ; କିନ୍ତୁ ସତରେ କଳା ହେବ ତ !"

"କଳା ହେବ କି ଅନ୍ୟ କିଛି ରଙ୍ଗ ହେବ, ଆଜି କିମ୍ବା କାଲି ରାତିରେ ସ୍ପଷ୍ଟ ଜଣାପଡ଼ିଯିବ ।'' ରୋଜା କହିଲା ।

"ଏତେ ସମୟ ଅପେକ୍ଷା କରିହେବ ? ବରଂ ଫୁଲଟା ପୁରା ଫୁଟିଗଲେ ତୁମେ ଖଣ୍ଡେ ଚିଠି ପଠାଇ ଦିଅନ୍ତ ।''

"ଚେଷ୍ଟା କରିବି ।''

"ଚିଠି ପାଇଲେ ମୋର ଅଧେ ଉଦ୍‌ବେଗ କମିଯିବ ।''

ଘଣ୍ଟାରେ ଦଶଟା ବାଜିଲା । ରୋଜାର ଫେରିବା ବେଳ ହେଲା ।

ତା ପରଦିନ ରାତିରେ ମୁକ୍ତ ଆକାଶର ବିହଙ୍ଗ ପରି ଏକ କମନୀୟ ଗତିରେ ରୋଜା ଚାଲିଆସିଲା କର୍ଣ୍ଣେଲିୟସ୍‌ଙ୍କ ପାଖକୁ ।

''କଣ, ଖବର କଣ ? ଫୁଟିଗଲା ?''

''ନା, ଏ ଯାଏଁ ଫୁଟିନାହିଁ; କିନ୍ତୁ ଆଜି ରାତି ଡେଇଁବ ନାହିଁ ।''

"ଗାଢ଼ କଳା ହେବ ତ ?''

"କୋଇଲି ପରି ଗାଢ଼ କଳା ହେବ ।"

''ଚିଠି ପଠାଇବା ଲାଗି ଲୋକ ଠିକ୍ କଲଣି ?"

''ହଁ ବିଶ୍ୱସ୍ତ ଲୋକଟିଏ ମିଳିଛି ।''

''କିଏସେ ?''

"ଯାଲଫ୍ । ମତେ ସେ ଖୁବ୍ ଭଲପାଏ; ହୃଦୟ ଦେଇ ପ୍ରେମ କରେ; ଦରକାର ପଡ଼ିଲେ ପ୍ରାଣ ବି ଦେଇଦେବ । ମୋର…।"

''ଓଃ ! ତୁମର ପ୍ରେମିକ !'' ବିଷଣ୍ଣ ହୋଇ କର୍ଣ୍ଣେଲିୟସ୍ କହିଲେ ।

"ଦୁଃଖର କଥା, ମୁଁ ତାକୁ ବିବାହ କରିପାରିବି ନାହିଁ । ଆପଣଙ୍କର ଉଇଲ୍ ଅନୁଯାୟୀ ମତେ କୌଣସି ୨୭ । ୨୮ ବର୍ଷର ଯୁବକକୁ ବିବାହ

କରିବାକୁ ପଡ଼ିବ; ତା ବିସ୍ମୟ ମୋଟେ ପଚରଣ !!—ଥଟ୍ଟା କରି କହିଲା ରୋଜା ।

“ଓ ! ମୋ ଉଇଲ୍‌ଟା ତୁମେ କଣ୍ଠସ୍ଥ କରି ରଖିଛ ? ତେବେ ଗୁଡ଼୍; ବିଶ୍ୱସ୍ତ ଲୋକ ନ ହେଲେ ବିପଦ ଘଟିବ ।”

“ନା ନା, ଆପଣ ରାଲଫ୍ ବିଷୟରେ ସନ୍ଦେହ କରନ୍ତୁ ନାହିଁ । କିନ୍ତୁ ଯଦି ଆମ ଚିଠି ପାଇ ବି ପୁଷ୍ପ ପ୍ରଦର୍ଶନୀର ସଭାପତି ନଆସନ୍ତି, ତେବେ ?”

“ଆସିବେ ନାହିଁ ? ଏପରି ଏକ ବିସ୍ମୟକର ଆବିଷ୍କାର ଦେଖିବା ଲାଗି କେଉଁ ଟ୍ୟୁଲିପ୍-ରସିକର ମନ ନହେବ ? ନିଶ୍ଚୟ ଆସିବେ । ଦୁଇ ଚାରିଦିନ ଭିତରେ ଆସିଲେ ବି ସେ ଆସିବା ବେଳକୁ ଫୁଲ ତାଜା ଥିବ; ସହଜରେ ମଉଳିବ ନାହିଁ । ସେ ନିଜେ ଆସି, ଫୁଲଗଛ ନେଇ ଖଣ୍ଡେ ପ୍ରାପ୍ତି ସ୍ୱୀକାରସୂଚକ ରସିଦ ଦେବେ । ···ମୋର ଇଚ୍ଛା କଣ ଜାଣିଛ ?”

“କଣ ?”—ଭାବବିହ୍ୱଳ ହୋଇ ରୋଜା ପଚାରିଲା ।

“ଫୁଲଟି ଧରି ଆମେ ଦୁହେଁ ହାର୍ଲେମ ଯାଆନ୍ତେ । କିନ୍ତୁ······ହାୟ, ମୁଁ ଯେ ଅଭାଗା ବନ୍ଦୀ; ତୁମେ ସରଳା ଅବଳା । ଆମ ଆଗରେ ଅନେକ ବିପଦ !”

“ବିପଦ ?”

“ମଣିଷ ଟଙ୍କାଏମିତେ ଚୋରାଇ ନେବାକୁ ପଛେଉନାହିଁ; ଇଏ ତ ଲକ୍ଷେ ମୋହରର କଥା । ତୁମେ ନିଜ ଆଖିରେ ଦେଖିଲ, ଜ୍ୟାକବ୍ ପରି ଭଦ୍ରଲୋକ କିପରି ଜଘନ୍ୟ ଜାଲୁଆର । ···ତୁମକୁ ମୋ ରାଣ, ରୋଜା, ତୁମେ ଫୁଲକୁ ଜଗିରହ, ଦିନରାତି ଜଗିରହ ।”

“ଠିକ୍ କଥା କହୁଛନ୍ତି । ମୁଁ ଯାଏଁ; ଦେଖେ କଣ ହେଲାଣି ।”

ରୋଜା ଚାଲିଗଲା । କର୍ଣ୍ଣେଲିୟସଙ୍କ ଆଖିକୁ ନିଦ ଆସିଲା ନାହିଁ । ସେ ଚାହିଁ ରହିଲେ ସୁନୀଳ ଆକାଶକୁ । ନୀଳିମା ଭିତରେ ଭାସିଉଠିଲା ଦୁଇଟି କମନୀୟ ମୁଖ—କଳା ଟ୍ୟୁଲିପ୍ ଓ ରୋଜା । ଗୋଟିକରେ ରାତିର କଜ୍ଜ୍ୱଳ, ଅନ୍ୟଟିରେ ନକ୍ଷତ୍ରର ଜ୍ୟୋତି । ସୌନ୍ଦର୍ଯ୍ୟର ଅପୂର୍ବ ସମାବେଶ ।

ଆକାଶରେ ତାରାଟିଏ ଖସିଗଲା । ଖେଳିଗଲା ଗୋଟିଏ ସୁନେଲି ରେଖା । ସେ ଏକ ଶୁଭ ସଙ୍କେତ । ସତେ କଣ ବର୍ତ୍ତମାନ ଟ୍ୟୁଲିପ୍‌ର ଘନକୃଷ୍ଣ ସୁଷମା ପୂର୍ଣ୍ଣ ବିକଶିତ ହୋଇଗଲା ? ତାହାହେଲେ ରୋଜା ନିଶ୍ଚୟ ଶୁଭ-ସମ୍ବାଦ ନେଇ ଆସିବ । ଘଣ୍ଟାରେ ଦୁଇଟା ବାଜିଲା । ଠିକ୍ ସେତିକିବେଳେ ଶିଡ଼ି ଉପରେ ଶୁଭିଲା କାହାର ବ୍ୟଗ୍ର ପଦଶବ୍ଦ ।

"କର୍ଣ୍ଣେଲିୟସ୍, କର୍ଣ୍ଣେଲିୟସ୍, ପ୍ରିୟ ମୋର, ଶୀଘ୍ର ଦେଖି ଯାଅ ।"— ରୋଜାର ଆହ୍ୱାନ !

ଉଚ୍ଛନ୍ନ ହୋଇ ଦୌଡ଼ିଆସିଲେ କର୍ଣ୍ଣେଲିୟସ୍ ।

"ଫୁଟିଛି ! ଫୁଟିଛି !! ହେଇଟି ଦେଖ ।"—ଶ୍ରେଷ୍ଠ ଫୁଲକୁ ଣ୍ଡଟିକୁ ଗୋଟିଏ ହାତରେ ଟେକିଧରି ଦୀପ ପାଖରେ ଦେଖାଇଲା ରୋଜା । ଆନନ୍ଦବିହ୍ୱଳ ହୋଇ କର୍ଣ୍ଣେଲିୟସ୍ କହିପକାଇଲେ, "ଧନ୍ୟ ତୁମର ମହିମା, ପ୍ରଭୁ ! ଏ ଅକିଞ୍ଚନ ବନ୍ଦୀ ପ୍ରତି ଏ କି ଅପାର କରୁଣା !!"

ସତରେ ସୁନ୍ଦର ସୁଠାମ ହୋଇ ଟ୍ୟୁଲିପ୍‌ଟି ଫୁଟିଥିଲା । ପ୍ରାୟ ଷାଠିଏ ସେଣ୍ଟିମିଟର ଉଚ୍ଚ ଗଛଟିର ଚାରିଟି ସୁନ୍ଦର ସବୁଜ ପତ୍ର ଉପରକୁ ଉନ୍ନତ ମଥା ଟେକି ଫୁଟିଉଠିଥିବା ଫୁଲଟିର ଘନକୃଷ୍ଣ ରଙ୍ଗ ଭିତରେ ପୂରି ହୋଇ ରହିଥିଲା ଏକ ମଧୁର କମନୀୟତା ।

"ରୋଜା, ସତରେ ତୁମେ ମାନବୀ ନୁହଁ, ତୁମେ ଦେବୀ; ଦେବଦୂତ ତୁମେ । ତୁମ ବିନା ଅନ୍ୟ କାହାରି ଦେଇ ଏ ସୁନ୍ଦର ସୃଷ୍ଟି ସମ୍ଭବ ହୋଇ ନଥାନ୍ତା ।"—ରୋଜାର ପ୍ରଶଂସାରେ କର୍ଣ୍ଣେଲିୟସ୍ ଶତମୁଖ ହୋଇ ଉଠିଲେ । ନମ୍ର ମଧୁର କଣ୍ଠରେ ରୋଜା ଜଣାଇଲା, "ବୃଥା ମୋର ପ୍ରଶଂସା କରନାହିଁ କର୍ଣ୍ଣେଲିୟସ୍ ! ସ୍ରଷ୍ଟା ଭଗବାନ, ଆବିଷ୍କର୍ତ୍ତା ତୁମେ ।"

ବାସ୍ତବତାର ଆହ୍ୱାନରେ କର୍ଣ୍ଣେଲିୟସ୍ କଳ୍ପନା ରାଜ୍ୟରୁ ଫେରି ଆସି ରୋଜାକୁ କହିଲେ, "ଆଉ ବିଳମ୍ବ କର ନାହିଁ । ଶୀଘ୍ର ଚିଠିଟି ଲେଖିଦିଅ ।"

"ଚିଠି ଲେଖିସାରିଛି । ଏଇ ଯେ; ଶୁଣନ୍ତୁ", କହି ରୋଜା କର୍ଣ୍ଣେଲିୟସ୍‌ଙ୍କୁ ଚିଠି ପଢ଼ି ଶୁଣାଇଲା । ସ୍ପଷ୍ଟ ସୁନ୍ଦର ଅକ୍ଷରରେ ସେ

ଲେଖିଥିଲ—

"ମାନନୀୟ ସଭାପତି ମହୋଦୟ,

ସୁଖର କଥା ଯେ ଆଉ ମାତ୍ର ଦଶଟି ମିନଟ ମଧ୍ୟରେ କଳା ଟ୍ୟୁଲିପ୍ ଫୁଲ ସମ୍ପୂର୍ଣ୍ଣଭାବେ ଫୁଟିଯିବ—ଠିକ୍ ଆପଣ ଘୋଷଣା କରିଥିବା ପରି ଅତି ଗାଢ଼ କଳା। ଫୁଲଟି ଫୁଟିଯିବା ସଙ୍ଗେ ସଙ୍ଗେ ଜଣେ ପତ୍ରବାହକ ହାତରେ ଏହି ପତ୍ରଟି ପଠାଇଦେବି। ମୋର ବିଶ୍ୱାସ, ଆପଣ ସ୍ୱୟଂ ଏଠାକୁ ଆସି ଏହି ଅପୂର୍ବ ଫୁଲଟି ଦେଖି ଚକ୍ଷୁକର୍ଣ୍ଣର ବିବାଦ ମେଣ୍ଟାଇ ଦେବେ। ମୁଁ ଲିଭେଷ୍ଟିନ୍ ଦୁର୍ଗର ଜେଲର୍ ଶ୍ରୀଯୁକ୍ତ ଗ୍ରାଇଫସ୍‌ଙ୍କର କନ୍ୟା; ମୋ ପରି ଜଣେ ଦୁର୍ବଳା ଅବଳା ଏପରି ଏକ ଅପୂର୍ବ ସମ୍ପଦ ଧରି ଆପଣଙ୍କ ପାଖକୁ ଯିବାରେ ନାନା ବିପଦ ରହିଛି।

ମୋର ଏକାନ୍ତ ଅଭିଳାଷ ଫୁଲଟିକୁ 'ରୋଜା-ବର୍ଣ୍ଣିଗ୍ରା-ବାଲଏନ୍‌ସ୍' ନାମରେ ଅଭିହିତ କରାଯାଉ।

ହେଇଟି ଫୁଲଟି ସମ୍ପୂର୍ଣ୍ଣ ଫୁଟିଗଲା। ସତରେ ଅମାଅନ୍ଧାର ରାତିପରି କଳା। ବିଳମ୍ବ ନକରି ଯଥାଶୀଘ୍ର ଚାଲି ଆସନ୍ତୁ। ଇତି।

| | |
|---|---|
| | ଆପଣଙ୍କର |
| ଲିଭେଷ୍ଟିନ୍ ଦୁର୍ଗ | ବିଶ୍ୱସ୍ତ |
| | ରୋଜା ଗ୍ରାଇଫସ୍" |

"ଚମତ୍କାର ହୋଇଛି।" କର୍ଣ୍ଣେଲିୟସ୍ ମତ ଦେଲେ।

"କିନ୍ତୁ ସଭାପତିଙ୍କର ଠିକଣା ?"

"ଦିଅ, ମୁଁ ଲେଖିଦିଏ" କହି କର୍ଣ୍ଣେଲିୟସ୍ ଚିଠିଟି ନେଇ ତା ଉପରେ ଠିକଣା ଲେଖିଦେଲେ, "ହାର୍ଲେମ ପୁଷ୍ପ ପ୍ରଦର୍ଶନୀ ସମିତିର ସଭାପତି ଶ୍ରୀଯୁକ୍ତ ଭ୍ୟାନ୍ ହ୍ୟାରସନ୍ ମହୋଦୟ ସମୀପେଷୁ।" ତା' ପରେ ରୋଜା ହାତକୁ ଚିଠିଟି ଫେରାଇ ଦେଇ ସେ କହିଲେ, "ଭଗବାନ ହିଁ ଆମର ସହାୟ, ରୋଜା; ସେହି ପ୍ରଭୁଙ୍କୁ ସ୍ମରଣ କରି ଚିଠିଟି ପଠାଇଦିଅ।"

ରାତି ଦୁଇଟାରେ ରୋଜା ଯେତେବେଳେ ଚିଠି ପଢ଼ି କର୍ଣ୍ଣେଲିୟସ୍‌ଙ୍କୁ

ଶୁଣାଉଥିଲି, ଠିକ୍ ସେତିକବେଳେ ବନ୍ଧଶାଳାର ଉପର ମହଲକୁ ଯାଇଥିବା ଶିଢ଼ିର ଗୋଟିଏ ଅନ୍ଧାରିଆ କୋଣରେ ଛପିରହିଥିଲି ଆଇଜାକ୍ ବକ୍ସଟେଲ । ସେ ଦୁଇ ପ୍ରେମିକଙ୍କର ସମସ୍ତ ଯୋଜନା ଶୁଣିପକାଇଲି । ବୋଲିବା ବାହୁଲ୍ୟ ଯେ ସେହି ଆଇଜାକ୍ ବକ୍ସ୍‌ଟେଲ ହିଁ ଜ୍ୟାକବ୍ ଗଗେଲସ ନାମ ଧରି ଗ୍ରାଇଫସର ମଦ୍ୟପ ବନ୍ଧୁ ବୋଲି ଅଭିନୟ କରୁଥିଲି । ତାର ଏକାନ୍ତ ବିଶ୍ୱାସ ଥିଲି ଯେ, କର୍ଣ୍ଣେଲିସ୍ଙ୍କ କଳା ଟ୍ୟୁଲିପ ପୁଅ ତିନୋଟି ନିଜର ପୋଷାକ ଭିତରେ ଲୁଗ୍ଇ ରଖିଛନ୍ତି । ତାର ଗତିବିଧି ଦେଖିଲେ କାଳେ ରୋଜା ମନରେ ସନ୍ଦେହ ଉପୁଜିବ, ସେହି ଭୟରେ ସେ ରୋଜାକୁ ପ୍ରେମ କରୁଥିବା ପରି ଅଭିନୟ କରିଚାଲିଲି । ଗ୍ରାଇଫସ୍ ପାଖରେ ପ୍ରସ୍ତାବ କଲି ଯେ ସେ ରୋଜାକୁ ବିବାହ କରିବ । ଗୋଟାଏ ବୟସ୍କ ଲୋକର ଏହି କୁତ୍ସିତ ପ୍ରବୃତ୍ତି ଦେଖି ରୋଜା ତାକୁ ଘୃଣା କରିବାକୁ ଲାଗିଲି । ରୋଜାର ଘୃଣା ବକ୍ସଟେଲକୁ ନିଜ କାର୍ଯ୍ୟରେ ଉତ୍ସାହ ଦେଲି । ସେ ଜାଣିଲି ଅଭିନୟ ଠିକ୍ ଚାଲିଛି; କିନ୍ତୁ ଗ୍ରାଇଫସ୍ ଯେଉଁଦିନ କର୍ଣ୍ଣେଲିସ୍ଙ୍କର ଫୁଲକୁଣ୍ଡ ଭାଙ୍ଗି ଟ୍ୟୁଲିପ୍ ପୁଅଟିକୁ ନଷ୍ଟକରିଦେଲି, ସେହିଦିନ ବକ୍ସଟେଲର ମୁଖା ଖୋଲିଗଲି । ରୋଜା ଓ କର୍ଣ୍ଣେଲିସ୍ ଜାଣିଗଲେ ଯେ ଟ୍ୟୁଲିପ୍ ପୁଅ ଚୋରି କରିବା ହିଁ ତାର ଏକମାତ୍ର ଅଭିପ୍ରାୟ । ତା'ପରେ ରୋଜା କିପରି ଟ୍ୟୁଲିପ୍ ପୁଅ ପୋତିବାର ଛଳନା କରି ବକ୍ସଟେଲକୁ ଚୋର ବୋଲି ପ୍ରମାଣିତ କରିଦେଲା, ଆପଣ ଜାଣନ୍ତି । ଜ୍ୟାକବ ଓରଫ୍ ବକ୍ସଟେଲ ଏଥର ଅଧିକ ସତର୍କ ହୋଇ ଚଳିଲି । ରୋଜା ସହିତ କର୍ଣ୍ଣେଲିସ୍ଙ୍କର କି ସମ୍ପର୍କ ରହିଛି ତାହା ବୁଝିପାରି ସେମାନଙ୍କର କଥାଭାଷା ଶୁଣିବା ଲାଗି ଅନେକ ଥର ସେ ଶିଢ଼ି ଉପରକୁ ଲୁଚି ଲୁଚି ଯାଇଛି ।

ହଠାତ୍ ଦିନେ ସେ ଦେଖିଲି ରୋଜା ଗୋଟିଏ ଫୁଲକୁଣ୍ଡରେ କିଛି ମାଟି ନେଇ ନିଜ ଶୋଇବା କୋଠରିରେ ରଖିଲି । ସେ ଧରିନେଲି ରୋଜା ଦ୍ୱିତୀୟ ଟ୍ୟୁଲିପ୍ ପୁଅଟି ସେହି କୁଣ୍ଡରେ ଲଗାଇଛି । ରୋଜାର ଅନୁପସ୍ଥିତିରେ ସେ ତାର ଶୋଇବା ଘରକୁ ଯାଇଥିଲି । ଦେଖିଲି ତାଲି ବନ୍ଦ । ଟାଣୁଆ ତାଲି ।–ଭିବିଲି ତାଲାଟିଭାଙ୍ଗି ଚୋରି କରିବ । କର୍ଣ୍ଣେଲିସ୍ଙ୍କ

ଘରେ ତ ପ୍ରବେଶ କରିବା ଲାଗି ସେ ଥରେ ଚେଷ୍ଟା କରିଥିଲା । ବର୍ତ୍ତମାନ ଆଉ ସେକୋଚର ଅବକାଶ ନାହିଁ ; କିନ୍ତୁ ରୋଜା ସତରେ ଟ୍ୟୁଲିପ୍ ପୁଅ ପୋଉଛି ତ ? ଦେଖିବାଲାଗି ସେ ଗୋଟାଏ ପନ୍ଥା ବାହାର କଲା । ବନ୍ଦଶାଳାର ଗୋଟିଏ ସାଧାରଣ ରାଜପଥକୁ ଲାଗି ଗ୍ରାଇଫସ୍‌ର ରହିବା ଘର । ଘରର ଝରକାଗୁଡ଼ିକ ସାଧାରଣ ରାଜପଥ ଆଡ଼କୁ ଖୋଲେ । ରୋଜାର ଶୋଇବା କୋଠରିର ଠିକ୍ ସାମନାରେ ରାସ୍ତାର ଅପରପାର୍ଶ୍ୱରେ ଗୋଟିଏ ଗ୍ରେଟ ହୋଟେଲ ଥାଏ । ଜ୍ୟାକବ୍ ସେହି ହୋଟେଲର ଗୋଟିଏ କୋଠରି ଭଡ଼ାନେଲା । କୋଠରିର ଝରକାରୁ ଚାହିଁଲେ ରୋଜାର କୋଠରି ସ୍ପଷ୍ଟ ଦେଖାଯାଏ । ଇତିହାସର ପୁନରାବୃତ୍ତି ଘଟିଲା । ଜ୍ୟାକବ୍ ଓରଫ ବକ୍‌ସଟେଲ ହୋଟେଲ ଝରକାରେ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜି ରୋଜାର ପ୍ରତ୍ୟେକଟି କାର୍ଯ୍ୟକଳାପ ଲକ୍ଷ୍ୟ କଲା ! ଫୁଲକୁ ଣ୍ଡ ପ୍ରତି ରୋଜାର ଖୁବ୍ ଆଦର । ସବୁବେଳେ ତା'ର ପରିଚର୍ଯ୍ୟା । ନିଶ୍ଚୟ ଟ୍ୟୁଲିପ୍ ପୁଅ ପୋଉଛି । କଳା ଟ୍ୟୁଲିପ୍ ତ ? ଦେଖାଯିବ । ପୁଅରୁ ଗଜା ବାହାରିଲା । ପ୍ରଥମ ପନ୍ଦଟି ଖୋଲିଲା । କର୍ଣ୍ଣେଲିୟସ୍ ରୋଜାକୁ ସବୁ ପ୍ରକାର ତାଲିମ୍ ଦେଇଛନ୍ତି । ପ୍ରତିଦିନ ସକାଳେ ସେ କୁଣ୍ଡଟି ନେଇ ପୂର୍ବଦିଗକୁ ଥିବା ଝରକା ପାଖରେ ରଖିଲା ; ଅପରବେଳା ପଶ୍ଚିମ ଦିଗରେ ଝରକା ପାଖରେ । ନୂଆ ନୂଆ ଖତସାର ଦିଆଗଲା । ଈର୍ଷାରେ ଜଳିପୋଡ଼ିଗଲା ବକ୍‌ସଟେଲ । ନା, ସେ ଟ୍ୟୁଲିପ୍ ଚୋରାଇ ନେବ ।ତାଲା ଭାଙ୍ଗିବ । ପ୍ରତି ରାତି ନଅଟାରୁ ଦଶଟା ପର୍ଯ୍ୟନ୍ତ ରୋଜା କର୍ଣ୍ଣେଲିୟସ୍‌ଙ୍କ ସହିତ କଟାଏ । ତାହା ହିଁ ଠିକ୍ ସମୟ ଦେଖି ପେନ୍ଥାଏ ଚାବି ନେଇ ବକ୍‌ସଟେଲ ଆସି ପହଞ୍ଚିଗଲା । ଗ୍ରାଇଫସ୍ ମଦନିଶାରେ ବେହୋସ । ବକ୍‌ସଟେଲ ତାଲା ଖୋଲିବା ଲାଗି ଚାବି ପରେ ଚାବି ପୂରାଇ ଚାଲିଛି । ହତଭାଗା ତାଲାଟା ! ଗୋଟାଏ ବି ଚାବି ଲାଗିଲା ନାହିଁ । କେବଳ ଗୋଟାଏ ଚାବି ଅଧଯୋଗ୍ର ଭୁଲି ଅଟକି ଯାଉଛି । ବକ୍‌ସଟେଲ୍ ନିରାଶ ହେବାର ଜନ୍ତୁ ନୁହେଁ । ତା ପରଦିନ ସେ ଉକ୍ତ ଚାବିଟିକୁ ତରଳ ମହମରେ ପୂରାଇ ତା ଉପରେ ଗୋଟାଏ ମହମ ବୋଳ ଲଗାଇଦେଲା ।

ପରିଧନ ଘଡ଼ ନଥ । ବାପାଙ୍କୁ କଡ଼ା ମଦ ପିଆଇ ଦେଇ 'ଗ୍ରେଜା ଚାଲିଗଲା ବନ୍ଧଶାଳାର ଉପର ମହଲାର ଏଗାର ନମ୍ବର କୋଠରି ପାଖକୁ । କର୍ଣ୍ଣେଲ୍‌ସ୍ମିଥଙ୍କ କୋଠରି ସେଇଟି । ବକ୍‌ସଟେଲ ମହମବୋଲା ଚାବି ଆଣି ତାଲାରେ କଷ କଲା । ଚାବି ବୁଲୁ ବୁଲୁ ଯେଉଁଠି ପ୍ରତିବନ୍ଧକ ଲାଗିଲା, ସେଠାରେ ଚାବି ଦେହରେ ଦାଗ ବସିଗଲା । ଆନନ୍ଦରେ ହୋଟେଲକୁ ଫେରି ଆସିଲା ବକ୍‌ସଟେଲ । ଗୋଟିଏ ଛୁରୀ ସଂଗ୍ରହ କରି ଚାବି ଉପରର ଦାଗ ଦେଖି ଘଷିଘାଷି ତାକୁ ଠିକ୍ ଆକାରକୁ ନେଇଆସିଲା । ଏଥର କି ଆଉ ତାଲା ନଖୋଲେ ! ଏଗାର ନମ୍ବର କୋଠରି ଝରକା ପାଖରେ ଖୁସି-ଗପରେ ବ୍ୟସ୍ତ ଥାଏ ଗ୍ରେଜା । ତା କୋଠରି ତାଲା ଏଣେ ଆଜ୍ଞାଧୀନ ଭୃତ୍ୟ ପରି ନିଃଶବ୍ଦରେ ଖୋଲିଗଲା । ଗ୍ରେଜାର କୋଠରି ଭିତରକୁ ନିର୍ବିକାରରେ ପଶିଗଲା ଜ୍ୟାକବ୍ । ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସେ ସେହି କୋଠରିର ପ୍ରତିଟି ବସ୍ତୁ, ପ୍ରତିଟି ସ୍ଥାନ ଦେଖିଛୁ । ଗ୍ରେଜାର ଆଦରର ଫୁଲକୁଣ୍ଡଟି ଧ୍ୱଠାଇ ଆଣିଲା । ସଗର୍ବରେ ବଢ଼ିଚାଲିଥିବା ଟ୍ୟୁଲପ୍ ଗଛଟିକୁ ବକ୍‌ସଟେଲ୍ ଚାହିଁଲା । ବିମୁଗ୍ଧ ହୋଇଗଲା ସେ । କି ସବଳ ସୁସ୍ଥ ହୋଇ ବଢ଼ୁଛି !! ଏହି ଟ୍ୟୁଲପ୍ ପାଇଁ ସେ କେତେ ପରିଶ୍ରମ ନକରିଛି ! କେତେ ଯାତନା ନ ସହିଛି ! ଏତେ ଦିନକେ ହାତକୁ ଆସିଛି; ଏଥର ନିଶ୍ଚୟ ନେଇଯିବ ।··· ଏଁ, ନେଇଯିବ ? କେଉଁଠିକି ? ଏପରି ସୁକୁମାର ଗଛ କଣ ହୋଟେଲରେ ବଢ଼ିପାରିବ ? ପୁଣି ଟ୍ୟୁଲପ୍ ଚୋରିଯିବା ସଙ୍ଗେ ଲିଭେଷ୍ଟିନ୍‌ରେ ଗ୍ରେଜା ହୁଲସ୍ଥୁଲ ପକାଇଦେବ । ଧରାପଡ଼ିଗଲେ ? ବଡ଼ କଥା ହେଲା ଫୁଲ । ଫୁଲଟା ଯଦି ନିଖୁଣ କଳା ନହୁଏ, ତେବେ ତାକୁ ଚୋରାଇ ନେଇ ଲାଭ କଣ ? ନା; ବରଂ ଗଛଟି ଏଇଠି ରହି ବଢ଼ୁ । କର୍ଣ୍ଣେଲ୍‌ସ୍ମିଥ୍ ଆହୁରି କିଛି ମସଲା ଓ ସାର ଜାଣିଥିବ । ସେ ସବୁ ଦେଇ ଫୁଲ ଫୁଟାଉ । ଫୁଲ ଫୁଟି ଯେତେବେଳେ ସ୍ପଷ୍ଟ ହୋଇଯିବ ଯେ ତାର ରଙ୍ଗ ଗାଢ଼ ନିଖୁଣ କଳା, ସେତେବେଳେ ସେ ଫୁଲ ଚୋରାଇ ନେଇ ସିଧା ଚାଲିଯିବ ହାର୍ଲେମ । ଆଉ ଆପତ୍ତି ଅଭିଯୋଗ କରିବାକୁ ଗ୍ରେଜାର ସମୟ ନଥିବ । ଲକ୍ଷେ ସୁନା ମୋହର ନେଇ ସେ ଫେରିଯିବ ତତ୍ । ସେ ମନେ ମନେ ତା ଭାଗ୍ୟକୁ

ପ୍ରଶଂସା ନକରି ରହିପାରିଲା ନାହିଁ । ଧୈର୍ଯ୍ୟ ଓ ସାହସ ନେଇ ସେ ଦିନ ପରେ ଦିନ ଅପେକ୍ଷା କରିବାକୁ ଲାଗିଲା ।

ଫୁଲ ଫୁଟିବା ବେଳ ହୋଇଗଲା । ଦୂରବୀକ୍ଷଣ ଯନ୍ତ୍ର ଦେଇ ରାତିରେ କିଛି ଦେଖିହେଲା ନାହିଁ । ରଙ୍ଗଟା କିପରି ହୋଇଛି ଦେଖିବା ଲାଗି ସେଦିନ ରାତି ନଅଟାରେ ସେ ଗୃହ ଖୋଲି ରୋଜା କୋଠରିରେ ପଶିଲା । ସୁନ୍ଦର କଳା ପାଖୁଡ଼ା କେତୋଟି ଖୋଲିଯାଇଥାଏ । ଆଉ ବିଳମ୍ବ କରିବା ଅନୁଚିତ ଭାବି ଜ୍ୟାକବ୍ ଚାଲିଗଲା ଗାଡ଼ି ଠିକ୍ କରିବାକୁ । ଗାଡ଼ିର ପୂରା ଦାମଟା ଅମାନତ ଦେଇ ହୋଟେଲ ପାଖରେ ଗାଡ଼ିଖଣ୍ଡିକ ପ୍ରସ୍ତୁତ କରି ରଖିଲା । ସୁଯୋଗ ମିଳିବା ମାତ୍ରେ ସେ ଫୁଲଗଛ ନେଇ ପଳାୟନ କରିବ । ରୋଜାର ଗତିବିଧି ଲକ୍ଷ୍ୟ କରିବା ଲାଗି ସେ ହୋଟେଲ ଝରକା ପାଖରେ ଛକି ବସିଲା ।

ରାତି ଦୁଇଟା । ଜ୍ୟାକବ୍ ଦେଖିଲା ହାତରେ କଣ ଗୋଟାଏ ଜିନିଷ ଧରି ରୋଜା କୋଠରି ବନ୍ଦ କରି ଚାଲିଗଲା । ଏତେ ରାତିରେ ସେ କି ଜିନିଷ ନେଇଗଲା ? କେଉଁଠିକି ଗଲା ? ଫୁଲଗଛଟା ସ୍ଥାନାନ୍ତରିତ କରୁନାହିଁ ତ ? ସର୍ବନାଶ ! ଦେଖିବାଲାଗି ସେ ଯଥାଶୀଘ୍ର ପାଦରୁ ଜୋତା କାଢ଼ି ରୋଜାର ପିଚ୍ଛା ଧରିଲା । ରୋଜା ସେ ଜିନିଷଟିକୁ ପୋଷାକ ତଳେ ଲୁଚାଇ ରଖି ଉପର ମହଲକୁ ଉଠିଲା । ଜ୍ୟାକବ୍ ଶିଡ଼ିକୋଣର ଅନ୍ଧାରରେ ଠିଆ ହୋଇ ଦେଖିଲା । ରୋଜା ଏଗାର ନମ୍ବର କୋଠରି ପାଖରେ ଡାକିଲା, "କର୍ଣ୍ଣେଲସ୍ବସ୍…।" ପୂରା ଫୁଲକୁଣ୍ଡଟା ଉଠାଇ ଆଣିଛି !! ସେଇଠି ଲୁଚି ରହି ସେ ଦୁଇ ବନ୍ଧୁଙ୍କର ସମସ୍ତ ଯୋଜନା ଜାଣିଗଲା । ରୋଜା ତାହାହେଲେ ହାର୍ଲେମ ପୁଷ୍ପ ପ୍ରଦର୍ଶନୀ ସମିତିର ସଭାପତିଙ୍କ ପାଖକୁ ଚିଠି ଲେଖିସାରିଛି !! ଆତଙ୍କିତ ହୋଇଗଲା ଜ୍ୟାକବ୍ । ଫୁଲଟା କଣ ହାତରୁ ଖସିଯିବ ? ରୋଜା ଫେରୁଛି ଦେଖି ଜ୍ୟାକବ୍ ଚଟାପଟ ଶିଡ଼ିରୁ ଓହ୍ଲାଇ ଆସି ଗ୍ରାଇଫସ୍‌ର କୋଠରି ଭିତରେ ଛପିଗଲା ।

ଜ୍ୟାକବ୍ ଦେଖିଲା ରୋଜା କର୍ଣ୍ଣେଲସ୍ବସ୍‌ଙ୍କ ପାଖରୁ ଫେରିଆସି ନିଜ କୋଠରି ଭିତରେ ପଶିଲା । ଟ୍ୟୁଲିପ୍ ଗଛଟି ଯଥାସ୍ଥାନରେ ରଖିଦେଇ ସେ

ଅଳ୍ପ ସମୟ ପରେ କୋଠରୀର ତାଲା ପକାଇ ବାହାରକୁ ଚାଲିଗଲା । ସୁଯୋଗ ମିଳିଗଲା ଜ୍ୟାକବ୍‌କୁ । ତାର ହାତରେ ଥିଲା ଚାବି । ମନରେ ଥିଲା ଧୃଷ୍ଟତା । ଗାଡ଼ି ତାର ଅପେକ୍ଷା କରିଥିଲା ବନ୍ଦଶାଳା ବାହାରେ, ହୋଟେଲ ପାଖରେ । ଆଉ ବିଳମ୍ବ ନକରି ସେ ତାର ପୂର୍ବର ଯୋଜନା ଅନୁରୂପ କାର୍ଯ୍ୟ କରିଗଲା । ରୋଜା ଫେରି ଆସିବା ବେଳକୁ ଜ୍ୟାକବ୍‌ର ଗାଡ଼ି ଲିଭେଷ୍ଟିନ୍ ଛାଡ଼ିସାରିଥିଲା ।

## ନଅ

ରୋଜାକୁ ବିଦାୟ ଦେବା ପରେ ଗାରଦଘେରା ଝରକା ପାଖରେ ଠିଆହୋଇ କର୍ଣ୍ଣେଲିୟସ୍ ନିଜକୁ ଏକ ସୁଖସ୍ୱପ୍ନରେ ହଜାଇ ଦେଇଥିଲେ । ଗାଢ଼ କଳାରଙ୍ଗର ଟ୍ୟୁଲିପ୍ ଫୁଟିସାରିଛି । ଧନ୍ୟ ଧନ୍ୟ ପଡ଼ିଯିବ ସାରା ପୃଥିବୀରେ । ଜନମତର ଖାତିରରେ ହଲାଣ୍ଡର ମହାରାଜା କର୍ଣ୍ଣେଲିୟସ୍‌ଙ୍କୁ ନିଶ୍ଚୟ ମୁକ୍ତ ଦେବେ । ଗୋଟିଏ ଦିଗରେ ଲାବଣ୍ୟମୟୀ ରୋଜା, ଅନ୍ୟ ଦିଗରେ ଲକ୍ଷେ ଗିଲଡ଼ାର ପୁରସ୍କାର ଲାଭର ସମ୍ମାନ । ଜୀବନରେ ଆଉ ସୁଖର ଅଭାବ ରହିବ ନାହିଁ ।

ହଠାତ୍ କାହାର ବ୍ୟଗ୍ର ପଦଶବ୍ଦରେ କର୍ଣ୍ଣେଲିୟସ୍‌ଙ୍କର ସୁଖସ୍ୱପ୍ନ ଭାଙ୍ଗିଗଲା । କିଏସେ ଏ ନିସ୍ତବ୍ଧ ରାତିରେ ? ଗ୍ରାଇଫସ୍ ନା କ'ଣ ?

କର୍ଣ୍ଣେଲିୟସ୍ ! କର୍ଣ୍ଣେଲିୟସ୍ !! ରୋଜାର ଆର୍ତ୍ତ କ୍ରନ୍ଦନରେ ବନ୍ଦଶାଳା ପ୍ରକମ୍ପିତ ହୋଇଗଲା । "ସର୍ବନାଶ ହୋଇଗଲା, କର୍ଣ୍ଣେଲିୟସ୍ ! ସର୍ବନାଶ ହୋଇଗଲା ! ଟ୍ୟୁଲିପ୍ ଆଉ ନାହିଁ !"

କର୍ଣ୍ଣେଲିୟସ୍ ଉପରେ ଯେପରି ଗୋଟାଏ ବଜ୍ର ପଡ଼ିଗଲା । "ଟ୍ୟୁଲିପ୍ ନାହିଁ ? କଣ କହୁଛ ରୋଜା !"

"ନାହିଁ, ଆଉ ନାହିଁ ।···ଗ୍ରଲଫ୍ ହାତରେ ଚିଠି ଦେଇ ହାର୍ଲେମ ପଠାଇବା ଲାଗି ଦଶ ପନ୍ଦର ମିନିଟ୍ ପାଇଁ ବାହାରକୁ ଚାଲିଯାଇଥିଲି । ଫେରିଆସି ଦେଖେତ ତ···।"

"ଟ୍ୟୁଲିପ୍ ନାହିଁ ? ଦ୍ୱାର ବୋଧହୁଏ ଖୋଲା ରଖିଯାଇଥିଲ ?"

"ନା ନା, ଖୁବ୍ ଭଲ କରି ତାଲା ପକାଇ ଯାଇଥିଲି ।"

"ଚାବି ?"

"ହେଇଟି ଦେଖ, ସେତେବେଳୁ ହାତରେ ଚାବି ଧରିଛୁ ।"

"ତା'ହେଲେ ତୁମ କୋଠରିରେ ଅନ୍ୟ ଲୋକ ପଶିଲା କିପରି ? ଟ୍ୟୁଲିପ୍ ଚୋରିଗଲା କିପରି ? ହାୟରେ ମୋ କପାଳ ?''

ବିଳାପ କରିବାକୁ ଲାଗିଲେ କର୍ଣ୍ଣେଲିୟସ୍ ।

''ମୋର ଆଦରର ଟ୍ୟୁଲିପ୍‌କୁ କିଏସେ ଚୋରାଇ ନେଲା, କର୍ଣ୍ଣେଲିୟସ୍ ? କିଏସେ ଚୋରାଇ ନେଲା ? ମୋର···'' ରୋଜା ମୁଖରୁ କ୍ରନ୍ଦନରୋଳ ବାହାରିଲା । ପରକ୍ଷଣରେ କର୍ଣ୍ଣେଲିୟସ୍ ଚିତ୍କାର କରିଉଠିଲେ, ''ଏ ସବୁ ସେହି ଜ୍ୟାକବ୍‌ର କାର୍ଯ୍ୟ । ସେହି ସଇତାନ ଜାଲ୍ ଚାବି ଗଢ଼ି ଚୋରେଇ ନେଇଛି ମୋ ଫୁଲ । ଆଜି ତାକୁ ଧରିବ ; ହଁ; ମୁଁ ତାକୁ ଧରିବ ।"

କର୍ଣ୍ଣେଲିୟସ୍‌ଙ୍କ ଚିତ୍କାର ଶୁଣି କାନ୍ଦି କାନ୍ଦି ରୋଜା କହିଲା, "ଆହା, ମୋର ହତଭାଗା ବନ୍ଧୁ ! ମୁଁ ତ ସାମାନ୍ୟ ଅବଳା, ତୁମେ ଯେ କାରାଗାରରେ ବନ୍ଦୀ । କିପରି ଧରିବା ସେ ଜୁଆଚୋର ଜ୍ୟାକବ୍‌କୁ ?"

''ଝରକାର ଲୁହାଛଡ଼ଗୁଡ଼ାକୁ ଦୁଇହାତରେ ଦୋହଲାଇ ଦେଉ ଦେଉ କର୍ଣ୍ଣେଲିୟସ୍ ଗର୍ଜନ କରିଉଠିଲେ, ''ବନ୍ଦୀ ! ବନ୍ଦୀ ! ମୁଁ ଆଉ କାରାଗାରରେ ବନ୍ଦୀ ହୋଇ ରହି ନପାରେ, ରୋଜା ! ଭାଙ୍ଗିଦିଅ ଏ ତାଲା । ଖୋଲିଦିଅ ଏ ଦ୍ୱାର ! ମୁଁ ଶୀଘ୍ର ଯାଏ, ଧରିଆଣେ ସେ ସଇତାନ ଟ୍ୟୁଲିପ୍ ଚୋରକୁ ।"

''ହାୟ, ମୁଁ କଣ କରେଟି ! ମୁଁ କିପରି ଖୋଲିଦେବି ବନ୍ଧୁ ?"

''ଖୋଲିଦେବ ନାହିଁ ? ନିଷ୍ଠୁର ! ତାହାହେଲେ କଣ ବାହାରେ ବାହାରେ ଠିଆହୋଇ ମୋର ସର୍ବନାଶ ଦେଖୁଥିବ ?"

''ଆହା, ମୋର ବନ୍ଧୁ ! ମୋଠାରେ ଯଦି ତୁମକୁ ମୁକ୍ତ କରିଦେବାର ଶକ୍ତିଥାଆନ୍ତା, ତେବେ କଣ ଆଜି ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିଥାଆନ୍ତି ? ହାୟରେ ମୋ ପୋଡ଼ା କପାଳ ! ହାୟ !"—କହି କହି ହୋଇ କାନ୍ଦି ଉଠିଲା ରୋଜା ।

"ପାଗଳୀ ପରି କାନ୍ଦିବାର ବେଳ ଏ ନୁହେଁ । ଯାଅ, ଶୀଘ୍ର ଯାଅ, ରେଜା ! ବାପାଙ୍କଠାରୁ ଚାବିଗୁଚ୍ଛ ଆଣ; ଛଡ଼ାଇଆଣ ଚାବି । ଖୋଲି-



ଦିଅ, ଭାଙ୍ଗିଦିଅ ଏ ଦ୍ୱାର । ଭାଙ୍ଗ୍ ଭାଙ୍ଗ୍, ···।" କହି କର୍ଣ୍ଣେଲ୍‌ସୁପ୍ ଲୁହା କବାଟ ଉପରେ ଠାଇ ଠାଇ କରି ମୁଣ୍ଡ ପିଟିବାକୁ ଲାଗିଲେ ।

ଆର୍ତ୍ତନାଦ କରଉଠିଲା ରେଜା, "ଆହା ଆହା,—ଶାନ୍ତ ହୁଅ କର୍ଣ୍ଣେଲସ୍ୱପ୍, ଶାନ୍ତ ହୁଅ, ପ୍ରିୟ ମୋର । ଏହି ମୁଁ ଗଲି । ସବୁ ବାଧା, ସବୁ ବନ୍ଧନ ଭାଙ୍ଗି ବାପାଙ୍କଠାରୁ ମୁଁ ଗୁବ ନେଇଆସିବି । ଏଇ ମୁହୂର୍ତ୍ତରେ ମୁଁ ତୁମକୁ ମୁକ୍ତ କରଦେବି କର୍ଣ୍ଣେଲସ୍ୱପ୍ !"

କିନ୍ତୁ ଠିକ୍ ସେହି ମୁହୂର୍ତ୍ତରେ ରେଜାର କେଶଗୁଚ୍ଛଟା ଧରପକାଇ ଗ୍ରାଇଫସ୍ ଗର୍ଜନ କରଉଠିଲା, "ବେଇମାନ ଟୋକୀ । ଏଡ଼େ ବଢ଼ୁଛ ତୋର ?"

ରେଜାର କନ୍ଦନ ଓ କର୍ଣ୍ଣେଲସ୍ୱପ୍‌ଙ୍କର ଚିତ୍କାର ଫଳରେ ଘୁମନ୍ତ ପ୍ରହରୀ ଜାଗିଉଠିଲା । ଗ୍ରାଇଫସ୍‌ର ମଦନିଶା ଭାଙ୍ଗିଗଲା । ଘଟଣା କଣ ଦେଖିବା ଲାଗି ସେ ଦୌଡ଼ିଆସିଲା ଏଗାର ନମ୍ବର କୋଠରୀ ପାଖକୁ । ଏପରି ଅପ୍ରତ୍ୟାଶିତ ଭାବରେ ବାପାଙ୍କୁ ଦେଖିବାକୁ ପାଇ ରେଜା ପାଟି କରଉଠିଲା 'ବାପା ! ବାପା !"

ରେଜାକୁ ଟାଣି ନେଇ ନେଇ ଗ୍ରାଇଫସ୍ ପୁଣି ଗର୍ଜିଉଠିଲା, "ଚୁପ୍ କର, ବିଶ୍ୱାସଘାତକୀ । ଗୋଟାଏ କଏଦୀର ଚିକ୍‌କଣ ମଧୁର କଥାରେ ଭୁଲିଯାଇ ତୁ ତୋର ନିଜ ବାପର ସର୍ବନାଶ କରିବାକୁ ବସିଲୁଣି ? ଗୁଲ୍ ତଳେ ଆଜି ମୁଁ କଣ କରୁଛି ଦେଖିବୁ ।"

ରେଜାର ସେ ଅବସ୍ଥା ଦେଖି କୋଠରୀ ଭିତରୁ କର୍ଣ୍ଣେଲସ୍ୱପ୍ ଗର୍ଜନ କରି ଶୁଣାଇ ଦେଲେ, "ଖବରଦାର ଜେଲର୍ ! ରେଜା ଦେହରେ ଟିକିଏ ହାତ ଦେଇଛ ତ ପୁରା ପ୍ରାଣ ନେଇଯିବି । ଖବରଦାର !"

ଏ ଅସହ୍ୟ ଅପମାନ କି ଗ୍ରାଇଫସ୍ ସହେ ? ଅଧାବାଟରେ ରେଜାକୁ ଛାଡ଼ିଦେଇ ଗୋଟାଏ ବିକଟାଳ ହସରେ ଭାଙ୍ଗିପଡ଼ିଲା ଗ୍ରାଇଫସ୍ । କର୍ଣ୍ଣେଲସ୍ୱପ୍‌ଙ୍କ ଝରକା ପାଖକୁ ଟଳି ଟଳି ଆସି ସେ ଶୁଣାଇଦେଲା ଏକ କ୍ରୂର ନିଷ୍ଠୁର ବାଣୀ, "ଆରେ ନୋଲିଏକ, କୁକ୍‌କୁର ! ରାତିଟା ପାହି ସକାଳ ହେଉ, ଦେଖିବୁ କିଏସେ କାହା ପ୍ରାଣ ନେବ । ଗୁବୁକ ମାରି ମାରି ତୋର ଡାଲୁରୁ ତଳପାଯାଏଁ ଦ'ପରସ୍ତ ଚମଡ଼ା ଛଡ଼ାଇ ନଦେଇଛି ତ ମୋ ନାଁ···"

ଏହି ସୁଯୋଗରେ ଚଲକୁ ଦୌଡ଼ି ଯାଉ ଯାଉ ରୋଜା ଶୁଣାଇଦେଇ ଗଲା, "ହତାଶ ହୁଅନ, ମୋର ପ୍ରିୟତମ ! ସବୁ ଯାଇଛି ସତ, କିନ୍ତୁ ମୁଁ ଅଛି ।"

"ଆରେ ହତ୍‌ଭାଗି, ନମକହାରାମ କୁତ୍ତୀ !"—ଝିଅକୁ ଭର୍ତ୍ସନା କରିସାରି ଗ୍ରାଇଫସ୍ କର୍ଣ୍ଣେଲିୟସ୍‌ଙ୍କ ପାଖରେ ଗଜ ଗଜ ହେଲା, "ପ୍ରିୟତମ ! ନୁହେଁ ? ତୁ ସଇତାନ । ତୋପରି ସଇତାନକୁ ଦେଖିବାଦିନୁ ମୋର ସୁନା ପରି ଝିଅ ନଷ୍ଟ ହୋଇଗଲା । ତୁ କମିଆ କରି ତା ମୁଣ୍ଡ ଖରାପ କରିଦେଲୁ । ପ୍ରଥମେ ତୋ ମୁଣ୍ଡ ଫଟାଇବି, ତା'ପରେ ତା କଥା । ଦେଖ, କାଲି ସକାଳୁ ତତେ କଣ କରୁଚି !"

କ୍ରୋଧ, ଶୋକ ଓ ନୈରାଶ୍ୟରେ କର୍ଣ୍ଣେଲିୟସ୍‌ଙ୍କର ସମସ୍ତ ଶରୀର ଥର-ଥର ହୋଇ କମ୍ପିବାକୁ ଲାଗିଲା । ଅଳ୍ପକ୍ଷଣ ମଧ୍ୟରେ ସେ ଅଚେତ ହୋଇ ତଳେ ପଡ଼ିଗଲେ । ଗୁଡ଼ାଏ ନିଷ୍ଠୁର କଥା କହି କହି ଗ୍ରାଇଫସ୍ ତଳ-ମହଲାକୁ ଫେରିଆସିଲା । ରୋଜା କୋଠରୀକୁ ଗୁହିଁ ଦେଖିଲା କୋଠରୀର କବାଟ ବନ୍ଦ । ଭାବିଲା, ଝିଅ ଶେଯରେ ପଡ଼ି କାନ୍ଦୁଛି । କାନ୍ଦୁ । ଏପରି ଝିଅ ଥିଲେ କେତେ ମଲେ କେତେ ? ଏଗୁଡ଼ାଙ୍କୁ କାମୁଡ଼ା କୁକୁରଙ୍କ ମୁହଁରେ ପକାଇଦେବା କଥା । ବିରକ୍ତ ହେଉ ହେଉ କେତେବେଳେ ଯେ ତା ଆଖିକୁ ନିଦ ମାଡ଼ିଆସିଲା, ସେ ଜାଣେନା ।

ରୋଜା କିନ୍ତୁ ଘରକୋଣରେ ବସି କାନ୍ଦିବାର ଝିଅ ନୁହେଁ । ସେ କର୍ଣ୍ଣେଲିୟସ୍‌ଙ୍କୁ ଭରସା ଦେଇ ଆସିଛି । ତାଙ୍କର ପ୍ରିୟ କଳା ଟ୍ୟୁଲିପ୍ ଫୁଲକୁ ସେ ନିଶ୍ଚୟ ଉଦ୍ଧାର କରିବ । ତାର ଆଉ ସନ୍ଦେହ ନାହିଁ ଯେ, ଜୁଆଗ୍ରେର ଜ୍ୟାକବ୍ ହିଁ ଟ୍ୟୁଲିପ୍ ଗ୍ରେଭିଇ ନେଇଛି । ସେ ଆସି ବାପାଙ୍କର କପଟୀ ବନ୍ଧୁ ସାଜିଥିଲା । ମଦଲୋଭରେ ବାପା ତାକୁ ବନ୍ଦିଶାଳାକୁ ଆସିବା ଲାଗି ସ୍ଥାୟୀ ଅନୁମତି ଦେଇଥିଲେ; ଦୁଧସର ଦେଇ ଘରଭିତରେ ବିଷାକ୍ତ ସାପ ପୋଷିଥିଲେ । ମଣିଷ ମଦପିଆ ଶିଖିଲେ କଣ ନକରେ ସତେ !! ଏଭଳି ବାପାଙ୍କଠାରୁ ସେ ଆଉ କି ସାହାଯ୍ୟ ଆଶା କରିବ ? ଆଉ ବିଲମ୍ବ ନକରି ସେ ଦୁଇ ଖଣ୍ଡ ଲୁଗାପଟା, ନିଜର ସଞ୍ଚିତ ଧନରାଶି ଗିଲଡ଼ାର

ଏବଂ କର୍ଷ୍ଟେଲ୍‌ସ୍ପସ୍ ଦେଇଥିବା ଡ୍ରଗଷ୍ଟ ଟ୍ୟୁଲ୍‌ପ୍ ଫୁଲଟି ନେଇ ଗୋଟିଏ ଥଳିରେ ପୁରାଇଲା । ଥଳିଟିକୁ କାଖ ତଳେ ଜାକି କୋଠରୀର କବାଟ ବନ୍ଦ କରିଦେଇ ସେ ଅଭିଯାନ ପଥରେ ବାହାରିପଡ଼ିଲା ।

ରୋଜା ଜାଣେ ସେହି ସାହିର ଜଣେ ଲୋକର ଗୋଟିଏ ଘୋଡ଼ାଗାଡ଼ି ଅଛି; ସେ ଲୋକ ଗାଡ଼ି ଭଡ଼ା ଦିଏ । ଗାଡ଼ି ଭଡ଼ା ନେବା ଲାଗି ସେ ଯାଇ ଗାଡ଼ିମାଲିକ ସହିତ କଥାଭାଷା କରେ ତ ମାଲିକ କହିଲା, "ଆଲୋ ମା, ଜଣେ ଅଚିହ୍ନା ଲୋକ ତୁମ ଜେଲଖାନା ସାମନା ହୋଟେଲରେ ରହୁଥିଲା; ସେ ଲୋକର କଣ ଜରୁରୀ କାମ ପଡ଼ିବାରୁ ଗାଡ଼ିଟାର ପୁରା ଦାମ୍ ଅମାନତ ରଖି, ଏହି ଅଧଘଣ୍ଟାକ ତଳେ ଗାଡ଼ି ନେଇଯାଇଛି । ତୋର ଯଦି ଦରକାର ମୋ ଘୋଡ଼ାଟି ନେ, ଅନ୍ୟ ଉପାୟ ତ ନାହିଁ ।"

ରୋଜା ବୁଝିପାରିଲା । ଗାଡ଼ି ଭଡ଼ା ନେଇଥିବା ଲୋକ ଜ୍ୟାକବ୍ ଭିନ୍ନ ଅନ୍ୟ କେହି ନୁହେଁ । ଓଃ, କି ମାରାତ୍ମକ !! ଟ୍ୟୁଲପ୍‌ଟା ହାତରେ ପଡ଼ିବା ମାନେ ସେ ହାର୍ଲେମ ଛୁଟିଛି । ଆଉ ବିଚାର କରିବାକୁ ବେଳ ନାହିଁ । ବାଧ୍ୟ ହୋଇ ସେ ଘୋଡ଼ାଟି ନେଇ ହାର୍ଲେମ ପଥରେ ବାହାରି ପଡ଼ିଲା । କିଏ ସେ ତାର ପଥରୋଧ କରିବ କରୁ । ନାରୀ ଅବଳା; କିନ୍ତୁ ଯେତେବେଳେ ତାର ଅନ୍ତରର ବଳ ଜାଗିଉଠେ ସେତେବେଳେ ସେ ହୋଇଉଠେ ମହାଶକ୍ତିମୟୀ । ଜଗତର ସବୁ ବଳ ତା' ପାଖରେ ପରାଭବ ଲଭନ୍ତି ।

ଅନ୍ଧାର ରାତି । ନିର୍ଜନ ପଥ । ଏକାକିନୀ ଅବଳା । ତଥାପି ସେ ଛୁଟିଲା ବିଜୁଳିବେଗରେ । ପାଞ୍ଚମାଇଲ ଖଣ୍ଡେ ଯିବାପରେ ରୋଜା ଦେଖିଲା ଆଗରେ ରାଲଫ୍ ଯାଉଛି । ସେ ଡାକ ପକାଇଲା ରାଲଫ୍‌କୁ । ତାକୁ ଅଟକାଇ ତା'ଠାରୁ ଚିଠିଟି ନେଇ ନିଜ ପାଖରେ ରଖିଲା । ସମସ୍ତ ବିଷୟ ଶୁଣି ରାଲଫ୍ ଅଗ୍ନିଶର୍ମା ହୋଇଗଲା । କହିଲା, ଜ୍ୟାକବ୍‌କୁ ପାଇଲେ ପ୍ରାଣରେ ମାରିଦେବ । ରୋଜା ରାଲଫ୍‌କୁ ନିଜର ଦେହରକ୍ଷୀ ହିସାବରେ ନେଇ ଲକ୍ଷ୍ୟ ପଥରେ ଆଗେଇ ଚାଲିଲା । ଦୁହେଁ ଅକ୍ଳାନ୍ତ, ଅପ୍ରତିହତ ଭାବରେ ଘୋଡ଼ା ଚଳାଇ ରାତି ପାହିବା ବେଳକୁ ଲିଭେଷ୍ଟିନ୍‌ଠାରୁ ପଚିଶମାଇଲ ଦୂରକୁ ଚାଲିଗଲେଣି । ଯାଉ ଯାଉ ବାଟରେ ପଡ଼ିଲା ବିଖ୍ୟାତ ସହର ରଟରଡ୍ୟାମ୍ ।

ରୋଜା ଦେଖିଲ ଘୋଡ଼ାଦୁଇଟାଙ୍କୁ ବିଶ୍ରାମ ନଦେଲେ ବାଟରେ ଅଟକ-ଯିବେ । ଫଳତଃ ଉଟରଡ଼୍ୟାମ୍‌ରେ ଦୁଇଘଣ୍ଟା ବିଶ୍ରାମ ନେଇ ଦୁଇବନ୍ଧୁ ନୂତନ ଉତ୍ସାହରେ ଯାତ୍ରା ଆରମ୍ଭ କଲେ । ଡଲଫ୍ ସହରରେ ପହଞ୍ଚିବା ବେଳକୁ ରାତି । ରାତିଟି ସେଠାରେ କଟାଇ ସକାଳୁ ଯାଇ ପହଞ୍ଚିଗଲେ ଫୁଲଫଳର କେନ୍ଦ୍ରସ୍ଥଳୀ ହାର୍ଲେମରେ । କିନ୍ତୁ ସେମାନଙ୍କର ଘଣ୍ଟାଘଣ୍ଟା ପୂର୍ବରୁ ଜ୍ୟାକବ୍ ଯାଇ ସେଠାରେ ପହଞ୍ଚିଯାଇଥିଲା ଏବଂ କଳା ଟ୍ୟୁଲିପ୍ ସହ ଦେଖାକରି ସାରିଥିଲା ପୁଷ୍ପ ପ୍ରଦର୍ଶନୀର ସଭାପତି ଭ୍ୟାନ୍ ହ୍ୟାରିସନ୍‌ଙ୍କ ସହିତ ।

ହାର୍ଲେମରେ ପହଞ୍ଚି ପହଞ୍ଚି ଭ୍ୟାନ୍ ହ୍ୟାରିସନ୍‌ଙ୍କ ଘର ଠିକଣା ବୁଝି ରୋଜା ଯାଇ ସେଠାରେ ପହଞ୍ଚିଗଲା । ଅବିଳମ୍ବେ ସଭାପତିଙ୍କୁ ଖବର ଦେଲା ଯେ ସେ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଚାହେଁ । ହ୍ୟାରିସନ୍ ସେତେ-ବେଳକୁ କଳା ଟ୍ୟୁଲିପ୍ ଆବିଷ୍କୃତ ହୋଇଥିବା ବିଷୟ ଜଣାଇ ପୁଷ୍ପ ପ୍ରଦର୍ଶନୀ ସମିତି ପାଇଁ ରିପୋର୍ଟ ଲେଖିବାରେ ବ୍ୟସ୍ତ ଥାଆନ୍ତି । ଏପରି ଜଣେ ସାଧାରଣ ସାକ୍ଷାତ-ପ୍ରାର୍ଥିନୀକୁ ସାକ୍ଷାତ ଦେଇ ସମୟ ନଷ୍ଟ କରିବାକୁ ସେ ଇଚ୍ଛା କଲେ ନାହିଁ; ବରଂ ବିରକ୍ତ ହେଲେ । କିନ୍ତୁ ଏପରି ନାସ୍ତିବାଣୀ ଶୁଣି ଘରକୁ ଫେରିଯିବା ଲାଗି ରୋଜା ଏତେ ବାଟ ଦୌଡ଼ି ଆସି ନଥିଲା । ସେ ସଙ୍ଗେ ସଙ୍ଗେ ଖଣ୍ଡେ ଶ୍ଳେଟ କାଗଜରେ ଲେଖି ଜଣାଇଦେଲା ଯେ "କଳା ଟ୍ୟୁଲିପ୍" ବିଷୟରେ ଏକ ଗୁରୁତର ସମ୍ବାଦ ଦେବାଲାଗି ସେ ଆସିଛି । କଳା ଟ୍ୟୁଲିପ୍ ନାମ ଶୁଣୁ ଶୁଣୁ ହ୍ୟାରିସନ୍ ବସିଥିବା ସ୍ଥାନରୁ ଉଠିଆସି ରୋଜାକୁ ସମ୍ଭାଷଣ ଜଣାଇ ପଚାରିଲେ, "ତୁମେ ଆସିଛ ଝିଅ ? କଳା ଟ୍ୟୁଲିପ ବିଷୟରେ କିଛି କହିବ ?"

"ଆଜ୍ଞା !"

"ଆସ, ଭିତରକୁ ଆସ । କଣ, ଖବର ସବୁ ଭଲ ତ ?"

"ଭଲ କି ଖରାପ ଜାଣିନାହିଁ, ମହାଶୟ !"

"ଜାଣିନାହିଁ !! ଇଏ କି କଥା କହୁଛ ? କିଛି ବିପଦ ପଡ଼ିଲା ନା କଣ ?"—ଆଶ୍ଚର୍ଯ୍ୟ ହୋଇଗଲେ ହ୍ୟାରିସନ୍ ।

"ସାଧାରଣ ବିପଦ ନୁହେଁ, ମହାଶୟ, ଘୋର ବିପଦ । ମୋର କଳା ଟ୍ୟୁଲିପଟି ଚୋରିହୋଇଯାଇଛି !"

"ଏଁ, ଚୋରି !! କଳା ଟ୍ୟୁଲିପ୍ ଚୋରି ହୋଇଗଲା ?"—ଭ୍ୟାନ୍ ହ୍ୟାରିସନଙ୍କ ସ୍ୱରରେ ହାହାକାର ।

"ହଁ, ଚୋରି···।"

"ଚୋରକୁ ଚିହ୍ନିଛ ?"

"ଖୁବ୍‌ଛି ଚିହ୍ନିଛି; କିନ୍ତୁ କେବଳ ସନ୍ଦେହ କରି କିପରି ଅଭିଯୋଗ କରିବି କହନ୍ତୁ ?" ବିକଳ ହୋଇ ରୋଜା କହିଲା ।

"କିନ୍ତୁ ଚୋର ଯିବ କେଉଁଆଡ଼େ ? ମୁଁ ତ ମୋଟେ ଦୁଇଘଣ୍ଟା ପୂର୍ବରୁ ଫୁଲଟି ଦେଖିଛି ।" ଭରସା ଦେଇ ସଭାପତି କହିଲେ ।

ଉଦ୍‌ବିଗ୍ନ ହୋଇ ରୋଜା ପଚାରିଲା, "ଆପଣ କଳା ଟ୍ୟୁଲିପ୍ ଦେଖିଲେଣି ?"

"ନିଶ୍ଚୟ ।" ବିଶ୍ୱାସ ଦେଇ ସଭାପତି କହିଲେ ।

"କେଉଁଠି, କେଉଁଠି ଦେଖିଲେ ?"

"ତୁମରି ମାଲିକଙ୍କ ପାଖରେ ।"

"ମୋ ମାଲିକ !!"—ବିସ୍ମିତ ହୋଇଗଲା ରୋଜା ।

"ହଁ ହଁ, ମିଷ୍ଟର ଆଇଜାକ୍ ବକ୍‌ସଟେଲ ତୁମର ମାଲିକ ନୁହନ୍ତି ?"

"ନା ନା, ମୁଁ ତ ଏପରି ନାମ ବି ପୂର୍ବରୁ ଶୁଣିନଥିଲି ।"

"ତୁମର ବି ଗୋଟିଏ କଳା ଟ୍ୟୁଲିପ୍ ଥିଲା ନା କଣ ?" ବିସ୍ମିତ ହୋଇ ହ୍ୟାରିସନ୍ ପଚାରିଲେ ।

"ତାହାହେଲେ ମୋ କଳା ଟ୍ୟୁଲିପ୍ ଛଡ଼ା ଆଉରି ଏକ କଳା ଟ୍ୟୁଲିପ ଅଛି ?" ରୋଜା ପଚାରିଲା ।

"ହଁ ହଁ, ମିଷ୍ଟର ଆଇଜାକ୍ ବକ୍‌ସଟେଲଙ୍କର ଟ୍ୟୁଲିପଟି ଗାଢ଼ କଳା ।"

"କଳା ?"

"ନିଶ୍ଚୟ, ଗାଢ଼ କଳା ।"

"ସେ କଳା ଟ୍ୟୁଲପ ଆପଣଙ୍କର ଏଠାରେ ରହିଛି ?"

"ନା, ବର୍ତ୍ତମାନ ନାହିଁ ; ତେବେ ଏଇଠିକି ଅଣାଯିବ । ପୁରସ୍କାର ଦିଆଯିବା ପୂର୍ବରୁ ପ୍ରଦର୍ଶନୀ ସମିତିର ସଭ୍ୟମାନେ ତଥା ବିଗ୍ଭରକମାନେ ଫୁଲଟିକୁ ଦେଖିବେ ନାହିଁ ?"

"ସେହି ବକ୍‌ସଟେଲଙ୍କୁ ପୁରସ୍କାର ଦିଆଯିବ ?··· ଆଚ୍ଛା, ମହାଶୟ ଲୋକଟି କଣ ଦେଖିବାକୁ ଖୁବ ଗୋରା ଓ ପତଳା !"

"ହଁ, ପତଳା ନୁହଁନ୍ତି ଆଉ କଣ !"

"ଚନ୍ଦା ମୁଣ୍ଡା ?"

"ହଁ ।"

"ଆଖି କୋରଡ଼ିଆ ।"

"ହଁ, ହଁ ।"

"ଗୋଡ଼ ଦୁଇଟା ଧନୁ ପରି ବଙ୍କା, ପୁଣି ଟିକିଏ କୁଜା ?"

"ବେଶ୍ ବେଶ୍, ଯାହା କହିଲ, ଅବିକଳ ସେଇଆ ।"

"ପୁଣି ତାଙ୍କ ଟ୍ୟୁଲପ କୁଣ୍ଡଟି ଦେଖିଛନ୍ତି ? ଚିନା ମାଟିରେ ତିଆରି; ଧଳା, ଉପରେ ହଳଦିଆ ରଙ୍ଗର ଡାଳ ଲତା ଅଙ୍କା ହୋଇଛି ?"

"ମୁଁ ଆଉ କୁଣ୍ଡ ଆଡ଼େ ବେଶି ଗ୍ଭହିଁନାହିଁ । ଫୁଲଟି ଦେଖି ହିଁ ମୁଁ ସନ୍ତୁଷ୍ଟ ହୋଇଯାଇଛି ।"···ହ୍ୟାରସନ୍ କହିଲେ ।

"କିନ୍ତୁ, ମହାଶୟ' ସେ ଫୁଲଟି ମୋ ଫୁଲ; ମୋର କୋଠରିରୁ ଚୋରିକରି ଅଣାଯାଇଛି । ମୁଁ ଆସିଛି ଫୁଲଟି ଉପରେ ମୋର ଦାବି ସାବ୍ୟସ୍ତ କରିବାକୁ ।" ରୋଜାର କଣ୍ଠରେ ଦୃଢ଼ତା ଫୁଟିଆସିଲା । ତାକୁ ଟିକିଏ ସନ୍ଦିଗ୍ଧ ନୟନରେ ଗ୍ଭହିଁ ସଭାପତି କହିଲେ, "ତୁମେ ବକ୍‌ସଟେଲଙ୍କର କଳା ଟ୍ୟୁଲପଟିକୁ ତୁମର ବୋଲି ଦାବି କରିବା ଲାଗି ଆସିଛ ? ଦେଖୁଛି ତୁମର କମ୍ ସାହସ ନୁହେଁ ତ !"

"ଦୟା କରି ଭୁଲ ବୁଝନ୍ତୁ ନାହିଁ । ଅନ୍ୟ କାହାର ଟ୍ୟୁଲପ୍ ଉପରେ ମୋର କୌଣସି ଦାବି ନାହିଁ; ମୋ ଦାବି ମୋ ନିଜର ଫୁଲ ଉପରେ ।"

"ନିଜର !"

"ନିଶ୍ଚୟ । ନିଜ ହାତରେ ମାଟି ସାର ଦେଇ ପୁଅ ପୋଡ଼ିଥିଲି, ଯତ୍ନ ଆଦର କରି ନିଜର କୋଳରେ ଶିଶୁପରି ଗଛ ବଢ଼ାଇଥିଲି; ସକଳ ପରିଶ୍ରମ କରି ଯେଉଁ ଫୁଲ ଫୁଟାଇଥିଲି, ତାହା ମୋର ନିଜର ନୁହେଁ ତ ଅନ୍ୟ କାହାର ?''

ଭ୍ୟାନ୍ ହ୍ୟାରିସନ୍ ଏପରି ଅଡ଼ୁଆ କଥାରେ ମୁଣ୍ଡ ପୁରାଇବାକୁ ଅନିଚ୍ଛା ପ୍ରକାଶ କରି କହିଲେ, "ତାହାହେଲେ, ମାଆ ! ତୁମର ମୋ ପାଖରେ କୌଣସି କାମ ନାହିଁ; ତୁମେ ବକ୍‌ସଟେଲଙ୍କ ପାଖକୁ ଯାଅ । ସେ ବର୍ତ୍ତମାନ 'ଶ୍ୱେତହଂସ' ହୋଟେଲରେ ରହିଛନ୍ତି; ସେଠିକି ଯାଇ ତୁମର କଳି ତୁଟାଅ । ମୁଁ କଳା ଟ୍ୟୁଲିପ୍ ଦେଖିଲି; ତଦନୁଯାୟୀ ରିପୋର୍ଟ ଲେଖି ସମିତି ଆଗରେ ପେଶ୍ କରିବି । ମୁଁ କିଛି ସଲେମନ୍‌ଙ୍କ ପରି ବୁଦ୍ଧିମାନ୍ ବିଚାରପତି ନୁହେଁ ଯେ ତୁମର ଏ ମାମଲାଟାକୁ ସହଜରେ ତୁଟାଇ ଦେଇ ପାରିବି । ସମିତି ପୁରସ୍କାର ଦେବେ; ଯାହାର ପୁରସ୍କାର ସେ ନେବ । ତୁମେ ଯାଅ, ଆଉ ମୋର ସମୟ ନଷ୍ଟ କରନାହିଁ ।"

"କିନ୍ତୁ ଟିକିଏ ଶୁଣନ୍ତୁ ମହାଶୟ ?" ରୋଜା ଅନୁରୋଧ କଲା ।

"ମୋର ଆଉ ଶୁଣିବା ଲାଗି କିଛି ନାହିଁ । ତୁମର ବୟସ କମ୍ । ସରଳ ସୁନ୍ଦର ରୂପ । ନିଷ୍କପଟ ମୁହଁ । ଏ ବୟସରୁ ଏପରି ଝିଅ ଜୁଆଚୋରି ଶିଖିବଣି ବୋଲି ମୁଁ କଳ୍ପନା ସୁଦ୍ଧା କରିପାରୁନାହିଁ । ଆମର ଏହି ହାର୍ଲେମରେ ଆମେ ଏତେ କିସମର ଫୁଲଫଳ ଚାଷ କରୁଛୁ, ହେଲେ ଚୋରି ଜାଲିଆତି ଏଠାରେ ଦେଖାନାହିଁ । ଆମେ ସେ ସବୁକୁ ଘୃଣା କରୁ । ଆମର ଏଠା ଅଦାଲତକୁ ଏ ମାମଲା ଗଲେ, ସତ କହୁଛି, ଦୋଷୀକୁ ସଙ୍ଗୀନ ଦଣ୍ଡ ମିଳିବ । ତେଣୁ ଯାହା କରିବ ବୁଝି ବିଚାରି କର । ଯାଅ, ବକ୍‌ସଟେଲଙ୍କ ଠିକଣା ତ କହିଲି—ବିଷୟଟାକୁ ଆପୋଷରେ ସମାଧାନ କରିଦିଅ ।"

ରୋଜା ଦେଖିଲା ସଭାପତି ଅନ୍ୟ କୌଣସି ବିଷୟ ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ତେଣୁ ସେ ବାଧ୍ୟହୋଇ ସେଠାରୁ ବିଦାୟ ନେଇ ଶ୍ୱେତହଂସ ହୋଟେଲ ଅଭିମୁଖରେ ଚାଲିଲା ।

## ଦଶ

ପାଇବାର ଆଶା ଓ ନପାଇବାର ଆଶଙ୍କାରେ ସୋଜା ଅସ୍ଥିର ହୋଇ ଉଠିଲା । ତାର ଅବସ୍ଥା ଦେଖି ରାଲଫ ଖ୍ରିଷଣ ରାଗିଯାଇ କହିଲା, "ଜାକବକୁ ପାଇଲାମାତ୍ରେ ମସ୍ତକ ମାଡ଼ ଚଢ଼ାଇବ ।" ସୋଜା ତାକୁ ଆଶ୍ୱାସନା ଦେଇ କହିଲା, "ସାହାକର, ଟ୍ରେଲପର ଯେପରି କୌଣସି କ୍ଷତି ନହୁଏ । ଶ୍ୱେତହଂସ ହୋଟେଲ କେଉଁଠି ବୋଲି ଲୋକଙ୍କୁ ପଚାରି ବୁଝି ବୁଝି ଗୋଟାଏ ସ୍ଥାନରେ ସୋଜା ଅଟକିଗଲା । ମନରେ ତାର ଉଠିଲା ଦ୍ୱନ୍ଦ୍ୱ । ବକ୍ସଟେଲ୍ ଲୋକଟା ନିଶ୍ଚୟ ଜ୍ୟାକବ୍ ହୋଇଥିବ; ଜ୍ୟାକବ୍‌ର ଆକୃତି ସହିତ ବକ୍ସଟେଲର ଆକୃତି ମିଶିଯାଉଛି, ସମ୍ପାଦକଙ୍କ କଥାରୁ ଅନ୍ତତଃ ସେତିକି ସ୍ପଷ୍ଟ ହୋଇଗଲା; କିନ୍ତୁ ଏକା ଆକୃତିର କଣ ଦୁଇଜଣ ଲୋକ ନଥାଇପାରନ୍ତି ? ସଂସାରରେ ତ କେତେ ଜାଗାରେ ଏପରି ଦେଖାଯାଏ । ତାହାହେଲେ ? ସୋଜା ଭାବିବସିଲା, ସେ ଜଣେ ନାରୀ । ଏ ବିଦେଶ ଜାଗାରେ ଗୋଟାଏ ହୋଟେଲ ଭିତରେ ପଶି କେଉଁ ପ୍ରମାଣବଳରେ ବକ୍ସଟେଲକୁ ସେ ଜ୍ୟାକବ୍ ବୋଲି କହିପାରିବ ? ଲୋକଟାକୁ ସ୍ପଷ୍ଟ ଭାବରେ ଚିହ୍ନିଟ ନକରି ଟ୍ରେଲପଟିକୁ ବା ନିଜର ବୋଲି ଦାବି କରିବ କିପରି ? ବରଂ ବକ୍ସଟେଲକୁ ଭ୍ୟାନ୍ ହ୍ୟାରିସନ୍‌ଙ୍କ ଘରକୁ ଡକାଇ ଆଣିବା ଉଚିତ ହେବ । ଭଦ୍ରଲୋକଙ୍କ ସମ୍ମୁଖରେ ଧୂର୍ତ୍ତାମି କରିବାକୁ ଲୋକଟାର ସାହସ ପାଇ ନପାରେ ; ସେଠାରେ ସହଜରେ ସତ୍ୟ ପ୍ରମାଣିତ ହୋଇପାରିବ ।

ସେତେବେଳକୁ ସହରର ରାସ୍ତାଘାଟ ଗୋଟାଏ ଅନନ୍ଦ କୋଳାହଳରେ ଚଞ୍ଚଳ ହୋଇଉଠିଥାଏ । ସେ ସବୁ ପ୍ରତି ଦୃଷ୍ଟି ନଦେଇ ସୋଜା ଆସି ପୁନର୍ବାର ହ୍ୟାରିସନ୍‌ଙ୍କ ପାଖରେ ପହଞ୍ଚିଲା । ହ୍ୟାରିସନ୍ ତାଙ୍କର ସୁନା କଲମ ଧରି ରିପୋର୍ଟ ଲେଖିବାରେ ବ୍ୟସ୍ତ ଥାଆନ୍ତି । ସୋଜାର ପୁନରାଗମନଜନିତ ବ୍ୟାଘାତରେ ବିରକ୍ତ ହୋଇ ସେ ପାଟିକରି ଉଠିଲେ, "ଆରେ ଏ ଝିଅଟା ସତରେ ପାଗଳୀଟାଏ ।"

"ମୁଁ ପାଗଳୀ ନୁହେଁ ମହାଶୟ, ମୁଁ ପାଗଳୀ ନୁହେଁ ।"

"ତୁମେ ଯାହା ହୁଅ, ଚାଲିଗଲ ଏଠୁ । ଏଠି ତୁମର କୌଣସି କାମ ନାହିଁ । ଦଶ ମିନିଟ ପରେ ଟ୍ୟୁଲିପ୍ ଉତ୍ସବ । ଏତେବଡ଼ ରିପୋର୍ଟଟା ଲେଖିବ ନା ତୁମ ସହିତ ବକ୍ ବକ୍ ହେବ ?"

"ମହାଶୟ, ମିଛ ଉପରେ ଭିତ୍ତିକରି ଯେତେବଡ଼ ରିପୋର୍ଟ ଲେଖିଲେ ବି ମିଛ କଣ ସତ ହୋଇପାରିବ ? ମୋର ଅନୁରୋଧ ପ୍ରଥମେ ସତ୍ୟଟା କଣ ବୁଝନ୍ତୁ । ମିଷ୍ଟର ଆଇଜାକ ବକ୍ସଟେଲଙ୍କୁ ଏଠାକୁ ଡକାନ୍ତୁ, ମୋର ବିଶ୍ୱାସ, ମୁଁ ତାଙ୍କୁ ଦେଖିଲେ ଆପଣଙ୍କ ସମକ୍ଷରେ ସବୁ କଥା ସ୍ପଷ୍ଟ ହୋଇଯିବ ।"

"ଓହୋ, ଇଏ କଣ ସବୁ ତୁମେ କହୁଛ ? ଏଇଟା କଣ ଅଦାଲତ ?"

"ଅଦାଲତ ନ ହେଲେ ବି ଆପଣ ଜଣେ ଦାୟିତ୍ୱସମ୍ପନ୍ନ ନିଷ୍ପକ୍ଷ ଭଦ୍ରବ୍ୟକ୍ତି । ଆପଣ ଚାହାନ୍ତି କଳା ଟ୍ୟୁଲିପ୍‌ର ପ୍ରକୃତ ମାଲିକ ପୁରସ୍କାର ପାଉ । ମୁଁ ବି ସେହି କଥା ଚାହେଁ । ମୁଁ କୌଣସି ଛଳନା କରୁନାହିଁ । ପ୍ରଭୁଙ୍କ ଦୋହିଦେଇ କହୁଛି ବକ୍ସଟେଲଙ୍କୁ ଦେଖିବାପରେ ମୁଁ ଯଦି ବୁଝିବି ଯେ ସେ ମୋର ସନ୍ଦେହର ବାହାରେ, ମୁଁ ତାଙ୍କୁ କେବେ ଦେଖି-ନାହିଁ, ସେ ଫୁଲ ମୋ ଫୁଲ ନୁହେଁ, ତେବେ ମୁଁ ଏଠାରେ କୌଣସି ଗୋଳମାଳ କରିବି ନାହିଁ; କିନ୍ତୁ ଯଦି ଆପଣ ମୋର ଅନୁରୋଧ ରକ୍ଷା ନ କରନ୍ତି, ତେବେ ଭବିଷ୍ୟତରେ ଆପଣଙ୍କୁ କ୍ଷୋଭ ପ୍ରକାଶ କରିବାକୁ ପଡ଼ିବ । ଆପଣ ଦେଖିବେ ଜଣେ ମିଥ୍ୟାବାଦୀ, ଜୁଆଚୋରକୁ ଆପଣଙ୍କର ଏହି ବିଖ୍ୟାତ ପୁଷ୍ପ ପ୍ରଦର୍ଶନୀ ସମିତି ଏକ ବିରାଟ ପୁରସ୍କାର ଦେଇଦେଇଛି । ସେତେବେଳେ ଆପଣ ବିବେକର ଦଂଶନ ସହି ପାରିବେ ତ ? ବର୍ତ୍ତମାନ ସମୟ ଅଛି, ସୁଯୋଗ ଅଛି; ତାଙ୍କୁ ଏଠାକୁ ଡକାଇ ଆଣନ୍ତୁ, ଭୁଲ କରିଯିବା ପୂର୍ବରୁ ଟିକିଏ ସତର୍କ ହୁଅନ୍ତୁ ।"

ଭ୍ୟାନ ହ୍ୟାରିସନ୍‌ଙ୍କ ମନକୁ କଥାଟା ପାଇଲା । ବାସ୍ତବିକ ବର୍ତ୍ତମାନ ସମୟ ଅଛି—ପରେ ଆଉ ସମୟ ମିଳିବ ନାହିଁ । ଯଦି କୌଣସି ଚୋର ଠକ୍‌ରକୁ ପୁରସ୍କାରଟା ଦିଆଯାଏ ତେବେ କି କ୍ଷୋଭର ବିଷୟ ନ

ହେବ ସତେ !! ସେ ସଙ୍ଗେ ସଙ୍ଗେ ଜଣେ କର୍ମଚାରୀଙ୍କୁ ଡାକ କହିଲେ, "ତୁମେ ଶୀଘ୍ର ଯାଇ ଶ୍ୱେତହଂସ ହୋଟେଲରୁ ଆଇଜାକ୍ ବକ୍‌ସଟେଲଙ୍କୁ ଡାକିଆଣ; କହିବ, ସାଙ୍ଗରେ କଳା ଟ୍ୟୁଲପ୍ ଗଛଟା ନେଇ ଆସିଥିବେ ।"

କର୍ମଚାରୀ ଜଣକ ଚାଲିଗଲେ । ଭ୍ୟାନସନ୍ କଲମ ଥୋଇଦେଇ ଚୌକୀରୁ ଉଠିଛନ୍ତି, ସଦର ଫାଟକ ପାଖରେ ଜନତାର ଆନନ୍ଦ କୋଳାହଳ ଶୁଣାଗଲା । ସଙ୍ଗେ ସଙ୍ଗେ କୋଳାହଳର ଉଦ୍ଦେଶ୍ୟ ବୁଝିପାରି ଭ୍ୟାନସନ୍ ଉଦ୍‌ବେଗ ହୋଇ ଫାଟକ ପାଖକୁ ଦୌଡ଼ିଗଲେ । ସେ ପାହାଚ ଓହ୍ଲାଇବା ବେଳକୁ ବହୁ ଗଣମାନ୍ୟ ଭଦ୍ରବ୍ୟକ୍ତିଙ୍କ ଗହଣରେ ଜଣେ ବିଶିଷ୍ଟ ଅତିଥି ତାଙ୍କ ଘର ଭିତରକୁ ପଶିଆସିଲେ । ଭ୍ୟାନ ଭ୍ୟାନସନ୍ ମାଟିରେ ମୁଣ୍ଡ ଲଗାଇ ଅତିଥିଙ୍କୁ ପ୍ରଣାମ ଜଣାଇଲେ । ସେ ଆନନ୍ଦରେ କହିଉଠିଲେ, "ଆଜି ମୋର କି ସୌଭାଗ୍ୟ ! ଏ ଅକିଞ୍ଚନର କୁଡ଼ିଆରେ ମହାରାଜା ଉଇଲିୟମ୍‌ଙ୍କର ପାଦ ପଡ଼ିଲା ।" ସମ୍ଭାଷଣ ଜଣାଇ ସେ ମହାରାଜାଙ୍କୁ ତାଙ୍କର ସୁସଜ୍ଜିତ ବୈଠକଖାନାକୁ ପାଛୋଟି ନେଲେ ।

ମହାରାଜା ଉଇଲିୟମ୍ ପ୍ରସନ୍ନ ହୋଇ ସହାସ୍ୟ ବଦନରେ କହିଲେ, "ସଭାପତି ମହାଶୟ, ମୁଁ ହଲାଣ୍ଡର ଷ୍ଟାଡ୍ ହୋଲ୍‌ଡେର ମହାରାଜା ସତ; କିନ୍ତୁ ପ୍ରତ୍ୟେକ ହଲାଣ୍ଡବାସୀ ପରି ମୁଁ ବି ଜଣେ ଫୁଲରସିକ । ଫୁଲ, ବିଶେଷ କରି ଟ୍ୟୁଲପ୍ ଫୁଲ ମୋର ଅତ୍ୟନ୍ତ ପ୍ରିୟ । ଟ୍ୟୁଲପ୍ ରାଜ୍ୟରେ ଆପଣ ଗୋଟିଏ ନୂତନ ବିସ୍ମୟ ସୃଷ୍ଟି କରିଇ ପାରିଛନ୍ତି ଶୁଣିବାପରେ ମୁଁ କଣ ଆପଣମାନଙ୍କଠାରୁ ଦୂରେଇ ରହିପାରେ ? କାହିଁ କେଉଁଠି ରଖିଛନ୍ତି କଳା ଟ୍ୟୁଲପ୍ ? ଟିକିଏ ଦେଖାନ୍ତୁ ନା ଶୀଘ୍ର !"

ଭ୍ୟାନ୍ ଭ୍ୟାନସନ୍ ସସମ୍ମାନେ ଜଣାଇଲେ, "ମହିମା, ସାମାନ୍ୟ ଟିକିଏ ଅପେକ୍ଷା କରନ୍ତୁ । ଟ୍ୟୁଲପ୍ ମାଲିକ ଏହିକ୍ଷଣି ଟ୍ୟୁଲପ୍ ନେଇ ଆସିଯିବେ । ମୁଁ ତାଙ୍କ ପାଖକୁ ଲୋକ ପଠାଇ ସାରିଛି ।"

ମହାରାଜା ଆସନ ଗ୍ରହଣ କରୁ କରୁ ପଚାରିଲେ, ସେ ଟ୍ୟୁଲପ୍ ମାଲିକଟି କିଏ ସେ ? ଘର କେଉଁଠି ?···ନିଶ୍ଚୟ ପ୍ରତିଭାବାନ୍ ବ୍ୟକ୍ତି ହୋଇଥିବ ।"

"ଭଦ୍ରଲୋକଙ୍କ ଘର ଡର୍ଟ୍‌ରେ, ନାମ ଆଇଜାକ୍ ବକ୍‌ସଟେଲ୍ ।"

"ବେଶ୍, ବେଶ୍ ! ଡର୍ଟ୍ ତାହାହେଲେ ନିଜର ଗୌରବ ରକ୍ଷା-କରିଛି । ଆପଣମାନେ ତ ଲକ୍ଷେ ଗିଲଡ଼ର ପୁରସ୍କାର ଦେବେ; କିନ୍ତୁ ମୁଁ ଭାବୁଛି ରାଜ୍ୟସରକାରଙ୍କ ପକ୍ଷରୁ ବି ଏହି ପ୍ରତିଭା ଲାଗି କିଛି ଗୋଟାଏ ସମ୍ମାନର ବ୍ୟବସ୍ଥା କରିବା ଉଚିତ ହେବ । କଣ କହୁଛନ୍ତି ?"

"କିନ୍ତୁ ମହାରାଜା···!"

"ଆପତ୍ତି କରୁଛନ୍ତି ?"

"ନା, ମହିମା, କଥା କଣ କି, ଏ ସମ୍ବାଦ ପ୍ରକାଶ ପାଉ ପାଉ ଜଣେ ଜାଲ ଦାବିଦାର ଆସି ପହଞ୍ଚିଗଲାଣି !"

"କଣ କହୁଛ !! ଟ୍ୟୁଲିପ୍ ଗୃହରେ ବି ଜାଲିଆତି ?" କ୍ରୁଦ୍ଧ ହୋଇଗଲେ ମହାରାଜା । ସେ ସଙ୍ଗେ ସଙ୍ଗେ ପ୍ରଶ୍ନକଲେ, "କାହିଁ, କାହିଁ ସେ ଜାଲ ଦାବିଦାର ?"

"ଗୋଟିଏ ଛୋଟ ଝିଅ ମହିମା !" ରୋଜାର ଅପରାଧକୁ ସାମାନ୍ୟ କରି ଦର୍ଶାଇବା ଲାଗି ହାରିସନ୍ କହିଲେ । "ସମ୍ଭବତଃ ଅନ୍ୟ କାହାର ପ୍ରରୋଚନାରେ ପଡ଼ି ସେ ବିଚାରି ଏଭଳି ଦାବି କରୁଛି । ମହାରାଜା ଯଦି ଚାହାନ୍ତି, ତେବେ ତାକୁ ଗ୍ରୁମ୍‌କୁ ଡାକିବା; ଏହି ଆର କୋଠରିରେ ଅଛି ।"

"ନିଶ୍ଚୟ କି ?—ଡାକି ଆଣନ୍ତୁ ! ତେବେ ଶୁଣନ୍ତୁ···ଆପଣ ତାକୁ ମୋର ପରିଚୟ ଦେବେ ନାହିଁ । ମତେ କେବଳ ଜଣେ ସମିତି ସଭ୍ୟ ବୋଲି ଚିହ୍ନାଇବେ । ସେ ଯେପରି ନିର୍ଭୟରେ ସବୁ କଥା କହିବ ସେଥିପାଇଁ ସୁଯୋଗ ଦେବା ।"

"ଧନ୍ୟ ମହାରାଜାଙ୍କର ବୁଦ୍ଧି ! ସାକ୍ଷାତ୍ ସଲୋମନ୍ ! ସ୍ୱୟଂ ସଲୋମନ୍ ଆଜି ଏ ମାମଲାର ନ୍ୟାୟବିଚାର କରିବେ ।" କହି କହି ହ୍ୟାରିସନ୍ ପାଖ କୋଠରିକୁ ଚାଲିଗଲେ । ସେ ରୋଜାକୁ ନେଇ ମହାରାଜାଙ୍କ ଗ୍ରୁମ୍‌କୁ ଆସିବା ବେଳକୁ ମହାରାଜା ବହିଥାକରୁ ଖଣ୍ଡେ ବଡ଼ ବହି ଉଠାଇ ନେଇ ପଢ଼ିବା ବାହାନାରେ ବହିଭିତରେ ନିଜର ମୁହଁ ଲୁଚାଇ ରଖିଥାନ୍ତି । ତାଙ୍କର

ଇଙ୍ଗିତ ପାଇ ଭ୍ୟାନ୍ ହ୍ୟାରସନ୍ ରୋଜାକୁ ଜେରା କରିବାକୁ ଆରମ୍ଭ କଲେ—

"ଶୁଣ ଝିଅ । ଯାହା କହିବ ସତ କହିବ ।"

ରୋଜା କହିଲା, "ମୁଁ ଶପଥ କରି କହୁଛୁ, ସତ ହିଁ କହିବ ।"

"ବେଶ୍; ଯାହା କହିବାର ଅଛୁ, ଏହି ଭଦ୍ର ମହାଶୟଙ୍କୁ କହିଯାଅ; ଏ ହେଉଛନ୍ତି ଆମ ପୁଷ୍ପ ପ୍ରଦର୍ଶନୀ ସମିତିର ଜଣେ ବିଶିଷ୍ଟ ସଭ୍ୟ ।"

"ଆଜ୍ଞା, ମୋର ତ ଆଉ କିଛୁ ଅଧିକ କହିବାର ନାହିଁ । ଯାହା କହିବାର ଥିଲା ସବୁ ଆପଣଙ୍କୁ କହି ସାରିଛୁ । ଆପଣ···।"

"ତାହାହେଲେ କଣ ଚାହୁଁଛ ତୁମେ ?"

"ମୋର ଅନୁରୋଧ, ଅପଣ ଅଇଜାକ୍ ବକ୍‌ସଟେଲ୍ ଏବଂ ତାଙ୍କ ଟ୍ୟୁଲିପ୍ ଗଛକୁ ଏଠାକୁ ଅଣାନ୍ତୁ । ମୁଁ ଯଦି ସେ ଫୁଲଟିକୁ ମୋ ଫୁଲ ବୋଲି ଚିହ୍ନି ନ ପାରେ, ତାହେଲେ ମୁଁ ନିଷ୍କପଟ ଭାବରେ ତାହା ସ୍ୱୀକାର କରିବି । ଯଦି ମୋର ବୋଲି ଚିହ୍ନେ, ତାହା ହେଲେ ମୋର ଦାବି ସାବ୍ୟସ୍ତ କରିବାଲାଗି ଆବଶ୍ୟକ ହେଲେ ମୁଁ ସ୍ୱୟଂ ଷ୍ଟାଡ୍ ହୋଲଣ୍ଡର ମହାରାଜା ଉଇଲିୟମ୍‌ଙ୍କ ଦରବାର ପର୍ଯ୍ୟନ୍ତ ଚାଲିଯିବି । ସେ ହିଁ ମୋର ଶ୍ରେଷ୍ଠ ବିଚାରପତି । ମୋ ହାତରେ ମହାରାଜାଙ୍କୁ ଦେଖାଇବା ଭଳି ପ୍ରମାଣ ରହିଛୁ ।"

"ପ୍ରମାଣ ରଖିଛ ?"

ରୋଜା ଦୃଢ଼ ସ୍ୱରରେ କହିଲା, "ଭଗବାନଙ୍କ ଦୟାରୁ ମୋ ପାଖରେ ଯଥେଷ୍ଟ ପ୍ରମାଣ ରହିଛୁ ।"

ମାମଲାରେ ଆଗ୍ରହ ପ୍ରକାଶକରି ମହାରାଜା କଣେଇ କଣେଇ ରୋଜାକୁ ଚାହିଁଲେ । ତାଙ୍କର ମନେହେଲା, ସେ ଏ ଝିଅଟି ପାଟିର ମଧୁର କଥା ନିଶ୍ଚୟ କେଉଁଠି ଶୁଣିଛନ୍ତି । ତେଣେ ସମସ୍ତ ଅତିବାହିତ କରିବା ଲାଗି ହ୍ୟାରସନ୍ ପଚାରି ଚାଲିଲେ, "ତାହାହେଲେ ତୁମେ ଏହି କଳା ଟ୍ୟୁଲିପ୍ ଆବିଷ୍କାର କରିଛ ?"

ମୁଁ ନିଜ ଶୋଇବା କୋଠରୀରେ କୁଣ୍ଡରେ ସୁଆ ପୋଡ଼ ଗଛ ଉଡ଼ାଉଛୁ ।''

"ତୁମ କୋଠରୀରେ ? କେଉଁଠି ସେ କୋଠରି ?"

"ଲଭେଷ୍ଟିନ୍‌ରେ ।"

"ତୁମେ ଲଭେଷ୍ଟିନ୍‌ରୁ ଆସିଛ ? ତୁମ ନାମ ?"

"ମୁଁ ଲଭେଷ୍ଟିନ୍ ଦୁର୍ଗର ବନ୍ଧଶାଳାର ରକ୍ଷକ ଶ୍ରୀଯୁକ୍ତ ଗ୍ରାଇଫସ୍‌ଙ୍କର ଝିଅ । ମୋ ନାମ ରୋଜା ଗ୍ରାଇଫସ୍ ।"

ମହାରାଜା ଟିକିଏ ଚମକି ଉଠିଲେ । ରୋଜାକୁ ସେ କେଉଁଠି ଦେଖିଥିଲେ, ମନେପଡ଼ିଗଲା । ହ୍ୟାରସନ୍ ପଚାରିଲେ, "ତୁମେ ତାହା-ହେଲେ ଫୁଲକୁ ଭଲପାଅ ?''

"ଆଜ୍ଞା ହଁ ।"

"ଫୁଲଗଛ ବିଷୟରେ ତୁମର ବହୁତ ଅଭିଜ୍ଞତା ଥିବ ?"

ରୋଜା ଟିକିଏ ସଙ୍କୋଚ ବୋଧକଲା । ନା, ସେ ସତ କଥା ହିଁ କହିବ, ମିଛ ନ କହିବା ଲାଗି ସେ ଶପଥ କରିଛି । ତା ମୁହଁରୁ ସତ୍ୟ ବାହାରି ଆସିଲା, "ମୁଁ ଭଦ୍ରଲୋକଙ୍କ ସହିତ କଥା କହୁଛି; ମୋର ଆଶା, ଜଣେ ବାଳିକାର ଗୋପନ କଥାକୁ ଅପପ୍ରଚାର କରାଯିବ ନାହିଁ । ସତ କହିବାକୁ ଗଲେ ଫୁଲଗଛରେ ମୋର ଅଭିଜ୍ଞତା ନାହିଁ । ମୁଁ ଅତି ମୂର୍ଖ । ତିନିମାସ ପୂର୍ବେ ମତେ ଲେଖାପଢ଼ା ବି ଆସୁ ନଥିଲା । କଳା ଟ୍ୟୁଲିପ୍ ମୋର ଆବିଷ୍କାର ନୁହେଁ ।"

"ତାହାହେଲେ—କାହାର ଏ ଆବିଷ୍କାର ?"

"ଲଭେଷ୍ଟିନ୍‌ର ଜଣେ ଅଭାଗା ବନ୍ଦୀଙ୍କର ।''

ଲଭେଷ୍ଟିନ୍‌ର ବନ୍ଦୀ ବୋଲି ଶୁଣିବାମାତ୍ରେ ମହାରାଜା ଅସ୍ଥିର ହୋଇଉଠିଲେ । ସେ ଆଉ ମୌନରହି ନପାରି ପଚାରିଲେ, ''ଲଭେଷ୍ଟିନ୍‌ର ବନ୍ଦୀ ?"

ସେହି କଣ୍ଠସ୍ୱର ଶୁଣି ରୋଜା ଚମକିଉଠିଲା । ତାର ମନେହେଲା ସେ କଣ୍ଠସ୍ୱର ସେ କେଉଁଠି ଶୁଣିଛି । ମହାରାଜା ପୁନର୍ବାର ପଚାରିଲେ, "ସେ

ବନ୍ଦୀ ତାହାହେଲେ ରାଜବନ୍ଦୀ ? କାରଣ ଲଭେଷ୍ଟିନ୍‌ରେ ରାଜବନ୍ଦୀ ଭିନ୍ନ ଅନ୍ୟ ବନ୍ଦୀ ରହନ୍ତି ନାହିଁ ।” ଏତିକ କହିସାରି ମହାରାଜା ପୁଣି ବହି ଭିତରେ ମୁହଁ ଲୁଚାଇଦେଲେ ।

କମ୍ପିତ ସ୍ୱରରେ ଗ୍ରେଜା କହିଲା, “ତାହା ସତ; ସେ ଜଣେ ରାଜବନ୍ଦୀ ।” ଏପରି ଏକ ଭୟଙ୍କର ସ୍ୱୀକାରୋକ୍ତି ଶୁଣି ହ୍ୟାରିସନ୍ ଆତଙ୍କିତ ହୋଇ-ଉଠିଲେ । ଆଉ କଣ ପଚାରିବେ ସେ ସ୍ଥିର କରିପାରିଲେ ନାହିଁ । ମହାରାଜା କହିଲେ, “ପଚାରନ୍ତୁ ପଚାରନ୍ତୁ !’’

ଗ୍ରେଜା ଭାବିଲା ହ୍ୟାରିସନ୍ହିଁ ତାର’ ବିଚାରପତି । ସେ ଭୟରେ କହି ପକାଇଲା, “ଏ କଥାଟା ବୋଧହୁଏ ମୋ ବିରୁଦ୍ଧରେ ଯିବ ?”

“ନିଶ୍ଚୟ । ରାଜବନ୍ଦୀ ସହିତ ସମ୍ପର୍କ ରଖିବା ହିଁ ରାଷ୍ଟ୍ରଦ୍ରୋହ ।” ବନ୍ଦିଶାଳାର ରକ୍ଷକର ଝିଅ ହିସାବରେ ତୁମେ ଯେଉଁ ସୁବିଧାତକ ପାଉଥିଲ ତାକୁ ଏହିପରି ଭାବରେ ବ୍ୟବହାର କଲ, ନା ?”

“ଆଜ୍ଞା ହିଁ, ମୁଁ ଅସ୍ୱୀକାର କରୁନାହିଁ ।”

“ଅବିଶ୍ୱାସ !” ହ୍ୟାରିସନ୍ କହିପକାଇଲେ ।

ବହି ଭିତରେ ମୁହଁ ରଖି ମହାରାଜା ସବୁ ଲକ୍ଷ୍ୟ କରୁଥିଲେ । ସେ କହିଦେଲେ, “ଆଃ, ଆମେ ପୁଷ୍ପପ୍ରଦର୍ଶନୀର ଲୋକ; ଏ ରାଷ୍ଟ୍ରଦ୍ରୋହ କଥାରେ ଆମର କଣ ଯାଏ ଆସେ ? ଆମେ ବସିଛୁ କଳା ଟ୍ୟୁଲିପ୍ ଆବିଷ୍କାର ସମ୍ବନ୍ଧରେ ସତ କଥାଟି ଶୁଣି ଆମର ନିଷ୍ପତ୍ତି ଜଣାଇଦେବୁ ।”

ଏ ଆଶ୍ୱାସନା ବାଣୀରେ ଗ୍ରେଜା ମନରେ ସାହସ ସଞ୍ଚାର ହେଲା । ଗତ ଉନିଶ ମାସ ଭିତରେ ଲଭେଷ୍ଟିନ୍‌ରେ ଯାହା ସବୁ ଘଟିଥିଲା, ତାହା ସରଳ ସ୍ପଷ୍ଟଭାବରେ କହିଗଲା । ଗ୍ରାଇଫସ୍‌ର ଅକାରଣ ନିଷ୍ଠୁରତା, ସେ ପ୍ରଥମ ପୁଅଟି ନଷ୍ଟ କରିଦେବା ପରେ ବନ୍ଦୀଟିର କରୁଣ ଅବସ୍ଥା, ଦ୍ୱିତୀୟ ପୁଅଟି ଯେପରି ନଷ୍ଟ ନହୁଏ ସେଥିପାଇଁ ନିଆଯାଇଥିବା ଅଶେଷ ଯତ୍ନ ଓ ସତର୍କତା, ସପ୍ତାହଟିଏ ଟ୍ୟୁଲିପ୍‌ର ସମ୍ବାଦ ନପାଇ ବନ୍ଦୀଟିର ଅନାହାରରେ ପ୍ରାଣତ୍ୟାଗର ଫନ୍ଦି, ତା’ପରେ ଟ୍ୟୁଲିପ୍ ଫୁଟିଯିବା ସମ୍ବାଦ ପାଇ ବନ୍ଦୀଟିର ଉନ୍ମାଦପ୍ରାପ୍ତ ଅବସ୍ଥା—ପ୍ରତ୍ୟେକ ବିଷୟ କହିଗଲା ଗ୍ରେଜା ।

ସେହି ସରଳ, ସ୍ପଷ୍ଟ ବର୍ଣ୍ଣନା ଶୁଣି ହ୍ୟାରିସନ୍ ଭାବିଲେ ଝିଅଟି ପ୍ରକୃତରେ ସତ କହୁଛି; କିନ୍ତୁ ମହାରାଜା ମନ୍ତବ୍ୟ କଲେ, "ଏ ବନ୍ଧୀ ସହିତ ତୁମର ପରିଚୟ ତ ବେଶି ଦିନର ନୁହେଁ !"

ରେଜାର ଦୁଇ ଆଖି ବିସ୍ଫାରିତ ହୋଇଗଲା । ସେ ଆତଙ୍କିତ ହୋଇ ପଚାରିଲା, "ଆପଣ କିପରି ତାହା ଅନୁମାନ କରୁଛନ୍ତି ?"

କାରଣ ଗ୍ରାଇଫସ୍ ତ ମୋଟେ ଚାରିମାସ ହେଲା ବଦଳି ହୋଇ ଲିଭେଷ୍ଟିନ ଆସିଛନ୍ତି ।" ବହି ଭିତରେ ମୁହଁ ରଖି ମହାରାଜା କହିଲେ ।

"ଆଜ୍ଞା, ହଁ । କିନ୍ତୁ—"

"ତାହାହେଲେ, ହେଗ୍‌ଠାରୁ ଏପରି କେଉଁ ବନ୍ଧୀ ବଦଳି ହୋଇ ଆସିଥିଲା, ଯାହାକୁ ଅନୁସରଣ କରିବାଲାଗି ତୁମେ ତୁମ ବାପାଙ୍କୁ ଲିଭେଷ୍ଟିନ୍ ବଦଳି କରାଇଦେଲ ।"

"ମହାଶୟ···" ରେଜା ପାଟିରୁ କଥା ବାହାରିଲା ନାହିଁ ।

"କଣ ମୁଁ ଭୁଲ କହୁଛି ? ମହାରାଜା ପଚାରିଲେ ।

"ନା, ଆଜ୍ଞା ! ହେଗ୍‌ଠାରୁ ହିଁ ବନ୍ଧୀଟି ସହିତ ମୋର ପରିଚୟ ଥିଲା ।" କହୁ କହୁ ରେଜାର ମୁହଁ ପୋଡହୋଇଗଲା ଲଜ୍ଜାରେ ।

ସହାସ୍ୟ ବଦନରେ ମହାରାଜା କହିଲେ, "ବନ୍ଧୀଟି ଭାଗ୍ୟବାନ୍ !"

ଠିକ୍ ସେହି ସମୟରେ ହାରିସନ୍‌ଙ୍କର କର୍ମଚାରୀଟି ଫେରି ଆସି ସମ୍ବାଦ ଦେଲା ଯେ ବକ୍‌ସଟେଲ୍ ତାହାର କଳା ଟ୍ୟୁଲିପ୍ ସହ ଆସି ବାହାର ଅତିଥିଶାଳାରେ ଅପେକ୍ଷା କରିଛି । ସମ୍ବାଦ ପାଇବାମାତ୍ରେ ମହାରାଜା ଭ୍ୟାନ୍ ହ୍ୟାରିସନ୍‌ଙ୍କୁ ନେଇ ଅତିଥିଶାଳାକୁ ଚାଲିଗଲେ । ରେଜା ଝରକାବାଟ ଦେଇ ସେହି ଆଡ଼କୁ ଚାହିଁରହିଲା । ଅତିଥିଶାଳାରେ ଗୋଟିଏ ସୁନ୍ଦର ଟେବୁଲ ଉପରେ ଟ୍ୟୁଲିପ୍ କୁଣ୍ଡଟି ରଖାଯାଇଥାଏ । ମହାରାଜା ସେପାଖରେ କିଛି ସମୟ ଠିଆହୋଇ ବିମୁଗ୍ଧ ନୟନରେ କଳା ଟ୍ୟୁଲିପ୍‌ର ସୌନ୍ଦର୍ଯ୍ୟ ନିରୀକ୍ଷଣ କରିବାପରେ ରେଜା ପାଖକୁ ଫେରି ଆସିଲେ । ରେଜାର ଆଖି ବକ୍‌ସଟେଲ୍‌କୁ ଖୋଜି ବୁଲୁଥାଏ । ମହାରାଜା ଫେରିଆସିବା ପରେ ପରେ ଶୁଣାଗଲା ବକ୍‌ସଟେଲ୍ ସଭାପତି ହ୍ୟାରିସନ୍‌ଙ୍କ

ସହିତ କଣ ସବୁ କଥାଭାଷା ହେଉଛି । ତା ପାଟିର କଥା ଶୁଣିବାମାତ୍ରେ ରୋଜା ଚିତ୍କାର କରିଉଠିଲା, "ଏହି, ଏହି ଲୋକଟା ମୋ ଟ୍ୟୁଲିପ୍ ଚୋରିକରି ଆଣିଛି !"

ଟିକିଏ କୌତୂହଳ ପ୍ରକାଶ କରି ମହାରାଜା ତାକୁ ଅତିଥିଶାଳାକୁ ଯାଇ ଲୋକଟାକୁ ଦେଖିବାକୁ ଇଙ୍ଗିତ ଦେଲେ । ଆଖିପିଛୁଳାକେ ରୋଜା ସେଠାକୁ ଦୌଡ଼ିଗଲା । ଯାଉ ଯାଉ ପ୍ରଥମେ ତା ଆଖିରେ ପଡ଼ିଲା କଳା ଟ୍ୟୁଲିପ । "ମୋର କଳା ଟ୍ୟୁଲିପ୍ ! ମୋର କଳା ଟ୍ୟୁଲିପ୍ !!...ଆହା ମୋର ଅଭାଗା ବନ୍ଧୁ କର୍ଣ୍ଣେଲିୟସ୍" ! କହି ରୋଜା ଛୁଟିଗଲା ଟ୍ୟୁଲିପ୍ କୁଣ୍ଡ ପାଖକୁ । ମହାରାଜା ତେଣେ ଝରକା ବାଟଦେଇ ଚାହିଁଥାନ୍ତି । ସେ ଡାକ-ପକାଇଲେ, "ଓ ବକ୍‌ସଟେଲ୍ ମହାଶୟ, କାହିଁ ଏଠାକୁ ଟିକିଏ ଆସିଲ !"

ଏପରି ଅପ୍ରତ୍ୟାଶିତ ଭାବରେ ମହାରାଜାଙ୍କର ଡାକରା ଶୁଣି ବକ୍‌ସଟେଲ୍ ଚମକିଉଠିଲା । ସେ ସେହି ଅତିଥିଶାଳାରେ ରହି ନତମସ୍ତକ ହୋଇ ପ୍ରଣାମ ଜଣାଇଲା, "ପ୍ରଣାମ ମହାରାଜା !" ରୋଜା ପାଟିରୁ ବି ବାହାରି ଆସିଲା, "ମହାରାଜା !" ଏଥର ସେ ମହାରାଜାଙ୍କୁ ସ୍ପଷ୍ଟ ଚିହ୍ନି-ପାରିଲା । ଏଣେ ରୋଜାକୁ ଦେଖିବା ମାତ୍ରେ ବକ୍‌ସଟେଲ୍ ଆତଙ୍କରେ କମ୍ପିବାକୁ ଲାଗିଲା । ଉଭୟେଁ ମହାରାଜାଙ୍କ ପାଖକୁ ଆସି ଠିଆହେଲେ । ଅବସ୍ଥା ଦେଖି ମହାରାଜାଙ୍କ ମନରେ ସ୍ୱତଃ ପ୍ରଶ୍ନ ଉଠିଲା, "ଲୋକଟା ସତରେ ଚୋର ନା କଣ ?" ଯାହାହେଉ ମନର ଭାବକୁ ଲୁଚାଇ ରଖି ଉପଯୁକ୍ତ ସମ୍ମାନ ଦେଖାଇ ସେ ପଚାରିଲେ, "ତାହାହେଲେ ଆପଣ ଏ ଅପୂର୍ବ କଳା ଟ୍ୟୁଲିପ୍ ଆବିଷ୍କାର କରିଛନ୍ତି ?"

ଭୟଭୀତ ମନକୁ ସଂଯତ କରି ବକ୍‌ସଟେଲ କହିଲା, "ହଁ ମଣିମା !"

"କିନ୍ତୁ ଏ ଝିଅଟି ବି ସେହି କଥା କହୁଛି ଯେ ?"

ରୋଜାକୁ ଟିକିଏ ଘୃଣାରେ ଚାହିଁଦେଇ ବକ୍‌ସଟେଲ ମୁହଁ ଆଉଁଟିଲେଇ ଦେଲା । ସେ କିଛି କହୁନାହିଁ ଦେଖି ମହାରାଜା ପଚାରିଲେ, "ଯାଙ୍କୁ ଆପଣ ଚହ୍ନନ୍ତି ?"

"ନାହିଁ ନା ତ ମଣିମା ." ବକ୍‌ସଟେଲ୍ କଣ୍ଠରେ ଆଶଙ୍କା ।

"ବୋଜା, ତୁମେ ଏ ଭଦ୍ରଲୋକଙ୍କୁ ଜାଣ ?"

"ଭଲ ଖବରେ ଜାଣେ ମଣିମା ! କିନ୍ତୁ ମୁଁ ଜାଣେ ଏହାଙ୍କ ନାମ ଜ୍ୟାକବ୍ ।"

"ମାନେ ?" ବିସ୍ମୟରେ ପୁଚ୍ଛିଲେ ମହାରାଜା ।

"ମାନେ—ଏ ଲୋକ ଲିଭେଷ୍ଟିନରେ ଜ୍ୟାକବ୍ ନାମରେ ନିଜର ପରିଚୟ ଦେଉଥିଲେ ।"

"ଏ ଅଭିଯୋଗର କି ଜବାବ ଦେବ ବକ୍‌ସଟେଲ୍ ?"

"ମିଛ ମଣିମା, ଏଗୁଡ଼ାକ ତାହା ମିଛ ।"

"ଅର୍ଥାତ୍ ତୁମେ କେବେ ଲିଭେଷ୍ଟିନ୍ ଯାଇନାହଁ ?"

"ଯାଇଛି ମଣିମା; କିନ୍ତୁ ମୁଁ ଟ୍ୟୁଲିପ ଚୋରି କରିନାହିଁ । ମଣିମା ପଚାରି ବୁଝିପାରନ୍ତି, ଟ୍ୟୁଲିପ ଚାଷରେ ମୋର କୋଡ଼ିଏ ବର୍ଷର ଅଭିଜ୍ଞତା ରହିଛି । ପୂର୍ବରୁ ମୁଁ କେତେ ପ୍ରକାରର ନୂଆ ଟ୍ୟୁଲିପ୍ ବି ଆବିଷ୍କାର କରିଛି । ଏ ଭିତରେ ମୋର ବ୍ୟକ୍ତିଗତ କାମ ନେଇ ମୁଁ ଲିଭେଷ୍ଟିନ୍ ଯାଇଥିଲି । ସେଠାରେ ଯାହାସବୁ ଘଟିଲା ସେଗୁଡ଼ିକ ମଣିମାଙ୍କ ଆଗରେ କିଣି କହିବି ।"

"ନା ନା, ସଙ୍କୋଚର କୌଣସି କାରଣ ନାହିଁ—କହିଯାଅ ।"

ବକ୍‌ସଟେଲ୍ କହିଲା, "ଲିଭେଷ୍ଟିନ୍‌ରେ ଗ୍ରାଇଫସ୍‌ଙ୍କ ସହିତ ସାକ୍ଷାତ ହେଲା । ଗପସପ କରିବା ଲାଗି ତାଙ୍କ ଘରକୁ ମୁଁ କେତେଥର ଯାଇଛି । ତାଙ୍କର ଏ ଝିଅ ରୋଜାକୁ ଦେଖି ମୁଁ ବିବାହ କରିବାକୁ ପ୍ରସ୍ତାବ ଦେଲି । ମୋର ଆର୍ଥିକ ବଳ ବିଶେଷ ନାହିଁ । ବହୁ ପରିଶ୍ରମ କରି ମୁଁ ସେତେବେଳେ କଳା ଟ୍ୟୁଲିପ ଉପରେ ଗବେଷଣା ଚଳାଇଥାଏ । ମୁଁ ତେଣୁ କହିଲି ଯେ, ଅଳ୍ପଦିନ ଭିତରେ ମୋର କଳା ଟ୍ୟୁଲିପ୍ ଫୁଟିଗଲେ ମୁଁ ଗୋଟାଏ ବଡ଼ ପୁରସ୍କାର ପାଇବି ।"

ରୋଜା ଚିତ୍କାର କଲା, "ମିଛ ମିଛ, ମଣିମା ! ଏ ଲୋକ କୌଣସି ଗବେଷଣା କରୁ ନଥିଲା ।" ମହାରାଜା ବି ଦେଖିଲେ ଯେ ବକ୍‌ସଟେଲ୍

ପ୍ରଥମେ କହୁଥିଲ, ସେ ରୋଜାକୁ ଚହ୍ନେନାହିଁ, ହୁଏତ ବର୍ତ୍ତମାନ କହୁଛ ସେ ରୋଜାକୁ ବିବାହ କରିବା ଲାଗି ପ୍ରସ୍ତାବ ଦେଇଥିଲ । ଅବଶ୍ୟ ମଣିଷ ଏସବୁ ଗୁପ୍ତ କଥା ସାଧାରଣରେ ପ୍ରକାଶ କରନ୍ତି ନାହିଁ, ତେଣୁ ଅବା ପ୍ରଥମରେ ଲୁଚାଉଥିଲ ।" ମହାରାଜା ରୋଜା କଥା ପ୍ରତି କାନ ନଦେଇ କହିଲେ, "ହଁ ତା ପରେ ?"

ବକ୍‌ସଟେଲ କହିଚାଲିଲ୍, "ଏ ଝିଅଟାର ସେଠାରେ ଥିବା ଜଣେ ବନ୍ଦୀ ସହିତ ଗୁପ୍ତ ପ୍ରଣୟ ଥିଲ । ସେ ଯେଉଁ ବନ୍ଦୀ, ସେ ଏକଦା ଟ୍ୟୁଲିପ୍ ସୃଷ୍ଟି କରିବା ଲାଗି ଚେଷ୍ଟା କରିଥିଲ । ଟ୍ୟୁଲିପ୍ ସୃଷ୍ଟି ବିଷୟରେ ସେ କିଛି କିଛି ଜାଣେ । ତାହାର ପ୍ରରୋଚନାରେ ପଡ଼ି ଏ ଝିଅ ମୋ ଘରୁ ଟ୍ୟୁଲିପ୍ ଗଛଟି ଚୋରାଇ ନେଇ ନିଜ ଶୋଇବା ଘରେ ଲୁଚାଇ ରଖିଲ । ପରିଶେଷରେ ଅବଶ୍ୟ ମୁଁ ମୋ ଗଛ ସେଠାରୁ ଉଦ୍ଧାର କରି ଆଣିଛି ।"

ରୋଜା ଏ କଥାରେ ଆପତ୍ତି କରି ପାଟିକଲ୍, "ହେ ଭଗବାନ ! ତାହା ମିଛ, ତାହା ମିଛଗୁଡ଼ାକ କହିଯାଉଛି ଏ ଲୋକ ।"

ତାକୁ ଚୁପ୍ କରାଇ ମହାରାଜା ବକ୍‌ସଟେଲ୍‌କୁ ପଚାରିଲେ, "ସେ ବନ୍ଦୀଟି କିଏସେ ତୁମେ ଜାଣ ବକ୍‌ସଟେଲ୍ ?"

"ଜାଣେ, ମହିମା ! ସେ ଜଣେ ରାଜଦ୍ରୋହୀ ବନ୍ଦୀ । ତା ନାମ ଡାକ୍ତର କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲି । ଡି-ଉଇଟ୍ ଦୁଇ ଭାଇଙ୍କ ସହିତ ତାର ଘନିଷ୍ଠ ସମ୍ପର୍କ ଥିଲ । ମହିମାଙ୍କ ଦୟାରୁ ସେ ଲୋକ ମୃତ୍ୟୁଦଣ୍ଡରୁ ଅବ୍ୟାହତି ପାଇ ଯାବଜ୍ଜୀବନ କାରାଦଣ୍ଡ ଭୋଗକରୁଛି ।"

"ଓ, ଏଥର ମନେପଡ଼ିଲ । ତାହାହେଲେ ରୋଜା ! ସେହି ରାଜଦ୍ରୋହୀ ଭ୍ୟାନ୍ ବାର୍ଲିକୁ ଅନୁସରଣ କରିବା ଲାଗି ତୁମେ ତୁମ ବାପାଙ୍କୁ ଲୋଭେଷ୍ଟିନ୍ ବଦଳି କରିବାକୁ ମୋତେ ଥରେ ପ୍ରାର୍ଥନା କରିଥିଲ, ନୁହେଁ ? ବର୍ତ୍ତମାନ ମୁଁ ଦେଖୁଛି, ସେ ଲୋକଟା କେବଳ ରାଜଦ୍ରୋହୀ ନୁହେଁ, ଚୋର ମଧ୍ୟ; ଏସବୁ ତାହାରି ପ୍ରବର୍ତ୍ତନା । ତୁମେ କେତେ ବଡ଼ ଭୁଲ୍ କରିଛ, ବୁଝିପାରୁଛ ରୋଜା ?"

ରୋଜାର ଦୁଇ ଆଖି ଲୁହରେ ଉଛୁଳି ପଡ଼ିଲ । ସେ କାନ୍ଦି କାନ୍ଦି

କହିବାକୁ ଲଗିଲ, "ନା ନା ମହାରାଜା ! କର୍ଣ୍ଣେଲିୟସ୍ ରାଜଦ୍ରୋହୀ ନୁହନ୍ତି, କି ଚୋର ତସ୍କର ନୁହନ୍ତି । ଏ ସବୁଥିରୁ ସେ ବହୁ ଉଚ୍ଚରେ । ହେ, ପ୍ରଭୁ ! କର୍ଣ୍ଣେଲିୟସ୍‌ଙ୍କ ପରି ମହତ୍ ପୁରୁଷ କାଳେ ଚୋର ! ସେ କାଳେ ରାଜଦ୍ରୋହୀ !!"

"ବୃଥା ଛଳନା କରନାହିଁ ଝିଅ । ଭ୍ୟାନ୍ ବାର୍ଲି ରାଷ୍ଟ୍ରଦ୍ରୋହମୂଳକ କାଗଜପତ୍ର ଲୁଚାଇ ରଖିନଥିଲା ?" ମହାରାଜା ପ୍ରଶ୍ନ କଲେ ।

"ନା, ମଣିମା, ନା । ସେ ସେହିପରି କାଗଜପତ୍ର କଥା ମୋଟେ ଜାଣିନଥିଲେ । ଯଦି ସେ ଜାଣିଥାନ୍ତେ ତେବେ ସେ ନିଶ୍ଚୟ ମତେ ସେ ବିଷୟ କହିଥାଆନ୍ତେ । ସେହିପରି ଲୋକ ଚୋର ହୋଇ ନ ପାରନ୍ତି । ଚୋର ଏହି ବକ୍‌ସଟେଲ, ଏହି ଜ୍ୟାକବ୍ । ମୋ ପାଖରେ ପ୍ରମାଣ ଅଛି, ମଣିମା !"

"ପ୍ରମାଣ ରଖିଛ ? କି ପ୍ରମାଣ ?" ମହାରାଜା ପଚାରିଲେ ।

"ମତେ ଟିକିଏ ଅନୁମତି ମିଳିଲେ ମୁଁ ଏ ଭଦ୍ରଲୋକଙ୍କୁ କେତୋଟା ପ୍ରଶ୍ନ ପଚାରିବି । ମହାରାଜା ଦେଖିବେ, ଏହି ସାଧୁପୁରୁଷ ହିଁ ଅସଲ ଚୋର ।"···ଗର୍ଜନ କରି ଉଠିଲା ରୋଜା । ତା'ର ସେ ଭୀଷଣ ଗର୍ଜନ ଶୁଣି ମହାରାଜା ବିସ୍ମିତ ହୋଇଗଲେ । ବକ୍‌ସଟେଲ ପ୍ରମାଦ ଗଣିଲା; ଚୋର ମନ ତ ଗଣ୍ଠିରେ । ସେ ବୁଝିପାରିଲା ନାହିଁ ରୋଜା ତାକୁ କି ପ୍ରକାର ପ୍ରଶ୍ନ ପଚାରିବ । ସେ କେବଳ ବୋକାଙ୍କ ପରି ଚାହିଁଲା । ମାମଲା କେତେ ଦୂର ଯାଉଛି ଦେଖିବାଲାଗି ମହାରାଜା ରୋଜାକୁ କହିଲେ, "ଠିକ୍ ଅଛି; ପଚାର, କଣ ପଚାରିବ ।"

ଦୃଢ଼ ଗମ୍ଭୀର ସ୍ୱରରେ ରୋଜା ବକ୍‌ସଟେଲକୁ ପଚାରିଲା, "ତୁମେ କହୁଛ—ଏ ଟ୍ୟୁଲିପ ତୁମେ ଆବିଷ୍କାର କରିଛ ?"

"ଏଁ ?···ନିଶ୍ଚୟ । ମୁଁ···ମୁଁ କରିଛି ।"

"ଏହାର କନ୍ଦାରୁ କେତୋଟା ପୁଆ ବାହାରିଥିଲା ।"

"ତିନୋଟା ।"

"ଏ ଗଛଟି କେଉଁ ପୁଆରୁ ହୋଇଛି ?"

"ଦ୍ୱିତୀୟ ପୁଅରୁ; ପ୍ରଥମଟା ନଷ୍ଟ ହୋଇଗଲା ।" ଥରଥର ହୋଇ କହୁ କହୁ ବକ୍‌ସଟେଲ ପାଟିରୁ ସତ କଥାଟା ବାହାରି ପଡ଼ିଲା । ସେ ନିଜର ଭୁଲ ବୁଝିପାରି ଜିଭ କାମୁଡ଼ିଦେଲା; କିନ୍ତୁ ସେତେବେଳକୁ ଲେଡ଼ଗୁଡ଼ କହୁଣୀକୁ ବୋହିଯାଇଥିଲା । ଏଥର ରୋଜାର ଜିତାପଟ । ସେ ବିଜୟ ଗର୍ବରେ ପଗ୍ଚରି ବସିଲା, "ତାହାହେଲେ ତୃତୀୟଟି କାହିଁ ?"

"ତୃତୀୟଟା ମୋ···ମୋ ଘରେ ଅଛି ।"

"କେଉଁଠି, ଡର୍ଟ୍‌ରେ ନା, ଲିଭେର୍ଷ୍ଟିନ୍‌ରେ ?"

"ଏଁ ?···ଲିଭେ···ନା ନା, ଡର୍ଟ୍‌ରେ ଅଛି ।"

"ମିଛ, ମିଛ ମଣିମା, ପୂରାପୂରି ମିଛ । ଗବେଷଣା ଚାଲିଲା ଲିଭେର୍ଷ୍ଟିନ୍‌ରେ, ଗଛ ହେଲା ଲିଭେର୍ଷ୍ଟିନ୍‌ରେ, ଏ ଲୋକ ରହୁଥିଲେ ଲିଭେର୍ଷ୍ଟିନ୍‌ରେ, ହୁଏତ ତୃତୀୟ ପୁଅଟା ରହିଥିଲା ଡର୍ଟ୍‌ରେ !! କେଉଁ ଟ୍ୟୁଲିପ ପ୍ରେମୀ ଏ କଥା ସତ ବୋଲି କହିବ ?—ସତ୍ୟଟା ମୋଠାରୁ ଶୁଣନ୍ତୁ, ମଣିମା ! ପ୍ରଥମ ପୁଅଟି କର୍ଣ୍ଣେଲିୟସ ବନ୍ଦୀଶାଳା ଭିତରେ ନିଜ କୋଠରିରେ ଲଗାଇଥିଲେ—ବାପା ସେଇଟିକୁ ଦଳି ଚକଟି ନଷ୍ଟ କରିଦେଲେ । ଫଳରେ ମୁଁ ଦ୍ୱିତୀୟ ପୁଅଟି ନେଇ ଏ ଭଣ୍ଡ ସନ୍ନ୍ୟାସୀଠାରୁ ନାନା ଭାବରେ ଦୂରେଇ ରଖି ମୋ ଶୋଇବା କୋଠରିରେ ଲଗାଇଥିଲି । ସେହି ପୁଅରୁ ଗଛ ହୋଇ ଏହି ଫୁଲଟି ଫୁଟିଲା, ଏବଂ ତୃତୀୟଟି···"

"ହଁ, ହଁ ତୃତୀୟଟି କାହିଁ ?" ଉଦ୍‌ବିଗ୍ନ ହୋଇ ମହାରାଜା ପ୍ରଶ୍ନ କଲେ ।

"ହେଗ୍‌ଠାରେ ବଧ ଭୂମିକୁ ଯିବାପୂର୍ବରୁ ମତେ ପୁଅ ତିନୋଟି ଦେଇ କର୍ଣ୍ଣେଲିୟସ୍ ମୋ ନାମରେ ଦାନପତ୍ର ଲେଖିଦେଇଥିଲେ । ଦୁଇଟି ପୁଅ ବିଷୟରେ ତ ଶୁଣିଲେ, ତୃତୀୟଟି ମୁଁ ସାଇତି ରଖିଛି । ହେଇଟି ଦେଖନ୍ତୁ ମଣିମା ! ଦାନପତ୍ର ଏବଂ ତୃତୀୟ ଟ୍ୟୁଲିପ ପୁଅ—ସେ ମୋତେ ଯେଉଁ କାଗଜରେ ପୁଡ଼ିଆ କରି ଦେଇଥିଲେ, ମୁଁ ସେହି ପୁଡ଼ିଆରେ ରଖିଛି ।" କହି ରୋଜା ନିଜ ପୋଷାକ ଭିତରୁ ପୁଡ଼ିଆଟି ବାହାରକଲା । ମହାରାଜାଙ୍କ ଆଗରେ ପୁଡ଼ିଆ ଖୋଲି ଦେଉ ଦେଉ ମହାରାଜା ପୁଅଟିକୁ ନେଇ

ଆଗ୍ରହରେ ପରୀକ୍ଷା କରିବାକୁ ଲାଗିଲେ । ଏହି ସମୟରେ ରୋଜାର ଆଖି ସେ ହାତରେ ଧରିଥିବା କାଗଜଖଣ୍ଡ଼ିଟି ଉପରେ ବୁଲି ଆସିଲା । କର୍ଣ୍ଣେଲିୟସ୍‌ଙ୍କ କୃପାରୁ ସେ ଆଉ ନିରକ୍ଷର ନୁହେଁ ! ସେ ପଢ଼ିଗଲା କାଗଜର ଲେଖାଟି । ଆପଣମାନେ ଜାଣନ୍ତି, ସେ କାଗଜଖଣ୍ଡିକ ଖଣ୍ଡିଏ ଚିଠି; କର୍ଣ୍ଣେଲିୟସ ଭି-ଉଇଟ୍ ଧର୍ମପୁତ୍ର ଭ୍ୟାନ୍ ବାର୍ଲିଙ୍କ ପାଖକୁ ଲେଖିଥିବା ଚିଠି । ପଢ଼ୁ ପଢ଼ୁ ରୋଜା ଆଖି ଆଗରେ ଗୋଟାଏ ଆଲୋକ ଖେଳିଗଲା, ଆଖି ତାର ବିସ୍ଫାରିତ ହୋଇଗଲା । ବକ୍‌ସଟେଲ ତେଣେ ମନେ ମନେ ପ୍ରମାଦ ଗଣି ବାରମ୍ବାପଣ ଘର ଥରୁଥାଏ । ରୋଜା କହିଉଠିଲା, "ଦେଖନ୍ତୁ, ଦେଖନ୍ତୁ ମହିମା, ଏ କାଗଜରେ କଣ ସବୁ ଲେଖାଯାଇଛି ।"

ମହାରାଜା ଟ୍ୟୁଲପ୍ ଫୁଲଟିକୁ ହ୍ୟାରିସନ୍‌ଙ୍କୁ ଦେଇ ଦେଲେ ଓ ରୋଜା ହାତରୁ କାଗଜ ଖଣ୍ଡିକ ନେଇ ପଢ଼ି ବସିଲେ ।

"ପ୍ରିୟ ଭ୍ୟାନ୍ ବାର୍ଲି,

... ... ... ...

ବିଦାୟ,

କର୍ଣ୍ଣେଲିୟସ ଡି ଉଇଟ୍

କ୍ଷଣକ ମଧ୍ୟରେ ମହାରାଜାଙ୍କର ମୁଖର ରୂପ ବଦଳିଗଲା । ସେ ଆତ୍ମବେଦନାରେ ଛଟପଟ ହେବାକୁ ଲାଗିଲେ । କି ଅନ୍ୟାୟ ସେ କରି ନାହାନ୍ତି !! ଏଭଳି ମହତ୍ ପୁରୁଷଙ୍କର ରାଜନୈତିକ ହତ୍ୟା ପାଇଁ ସେ ହିଁ ତ ଦାୟୀ । କର୍ଣ୍ଣେଲିୟସ୍‌ଙ୍କ ପରି ନିରପରାଧ ବ୍ୟକ୍ତିଙ୍କର ସକଳ କଷଣମୂଳରେ ରହିଛି ଏହି ମହାରାଜାଙ୍କର ଇଙ୍ଗିତ । ବିବେକଦଂଶନରେ ଅସ୍ଥିର ହୋଇ ସେ ଆପଣରୁ ଉଠିପଡ଼ି କହିଲେ, "ହଉ ବକ୍‌ସଟେଲ୍, ତୁମେ ନିଶ୍ଚିନ୍ତ ରହ । ତୁମକୁ ନିଶ୍ଚୟ ନ୍ୟାୟବିଚାର ମିଳିବ ।"

## ଏଗାର

ହାର୍ଲେମଠାରେ ନ୍ୟାୟବିଚାର ଚାଲିଥିବାବେଳେ ଚାଲନ୍ତୁ ଟିକିଏ ଲଭେଷ୍ଟିନ୍ ଆଡ଼େ ବୁଲି ଆସିବା । ସେଦିନ ସକାଳେ ଉଠୁ ଉଠୁ

ଗ୍ରାଇଫସ୍‌ର ଟିକଏ ବିଳମ୍ବ ହୋଇଗଲା । ଝିଅ ଉପରେ ବିରକ୍ତ ହୋଇ ମନେ ମନେ ଭାବିଲା—ଶୋଇଛି ତ ଶୋଉ, ମୁଁ ଆଉ ଉଠାଇବି ନାହିଁ । ସକାଳର କାମଦାମ ଶେଷ ହେଲା । ଯେଜାର ଦେଖାନାହିଁ । ମଧ୍ୟାହ୍ନ-ଭୋଜନ ବେଳକୁ ବି ଝିଅର ଦେଖା ନପାଇ ବୁଢ଼ା ଟିକଏ ବିଚଳିତ ହୋଇଗଲା । ଗ୍ରାଇଫସ୍‌ର ସେହି ଗୋଟିଏ ମାତ୍ର ସନ୍ତାନ । ଭାର୍ଯ୍ୟା ମଲାଣି ବହୁତ ଦିନ ହେଲା, ବୁଢ଼ାହିଁ ଯେଜାର ବାପା-ମାଆ ଉଭୟ । ଯେତେ ଦୋଷ କଲେ କଣ ହେବ ନଜର ତ ଝିଅ । ଖାଇବା ଟେବୁଲରୁ ଉଠିଯାଇ ଗ୍ରାଇଫସ୍ ଯେଜା କୋଠରୀକୁ ଯାଇ କବାଟ ବାଡ଼େଇ ଡାକପକାଇଲା, "ଯେଜା ! ଯେଜା !! ଆଲୋ ଦିନ ତମାମ ଶୋଇଥିବୁ କି ?" କବାଟ ଖୋଲୁନାହିଁ ଦେଖି ଗ୍ରାଇଫସ୍ ବିସ୍ମିତ ହୋଇଗଲା । ଏହି ସମୟରେ ଆଖି ପଡ଼ିଗଲା ତାଲା ଉପରେ । ଆରେ ! ଘରେ ତାଲା ପଡ଼ିଛି !! ଯେଜା ଗଲା କୁଆଡ଼େ !! ଅଥୟ ହୋଇ ବନ୍ଧଶାଳା ତମାମ ଖୋଜିଗଲା । ଉପରେ ନାହିଁ, ତଳେ ନାହିଁ, ବଗିଚାରେ ନାହିଁ, ଘରେ ନାହିଁ । ତେବେ ? ସାହିରେ ପଚାରି ବୁଝିଲା । ଶୁଣିଲା ଗତ ରାତିରେ ଯେଜା ଗୋଟାଏ ଘୋଡ଼ା ଉଡ଼ାନେଇ କେଉଁଠିକି ଯାଇଛି, କେଉଁଠିକି କେହି କହିପାରିଲେ ନାହିଁ । ବନ୍ଧୁ ଜ୍ୟାକବ୍ ଅବା ଜାଣିଥିବ ଭାବି ଜ୍ୟାକବ୍‌ର ହୋଟେଲକୁ ଯାଇ ବୁଝେ ତ ଜ୍ୟାକବ୍ ବି ଗତ ରାତିରୁ ଫେରିନାହିଁ । ଗ୍ରାଇଫସ୍ ଭାବିଲା ମଦୁଆ ଜ୍ୟାକବ୍ ହିଁ ତା ଝିଅକୁ ନେଇ କେଉଁଆଡ଼େ ପଳାଇଛି । ଓଃ, କେତେବଡ଼ କଥା ଘଟିନଗଲା !! ଦୁଃଖ ଓ ରାଗରେ ଗ୍ରାଇଫସ୍ ହତାହତ ଜ୍ଞାନ ହରାଇ ବସିଲା । କ'ଣ ଭାବିଲା କେଜାଣି ସବୁତକ ଦୋଷ ନେଇ ଢାଳିଦେଲା ଏଗାର ନମ୍ବର କର୍ଣ୍ଣେଲିୟସ୍‌ଙ୍କ ଉପରେ । "ସେହି ବଦମାସ୍ ବନ୍ଦୀଟା ସବୁ ନାଟର ଗୋବର୍ଦ୍ଧନ । ଦେଉଛି ଆଜି ରହ", କହି ଗୋଟାଏ ପୁରୁଷେ ଉଚ ଠେଙ୍ଗା ଧରି ଗ୍ରାଇଫସ୍ ଯାଇ ଏଗାର ନମ୍ବର କୋଠରି ପାଖରେ ପହଞ୍ଚିଗଲା ।

ବିରହି ବଧୂର କର୍ଣ୍ଣେଲିୟସ ପ୍ରିୟ କଳା ଟ୍ୟୁଲିପ୍‌ର ଶୋଚନୀୟ ପରିଣତିରେ ଏତେ ଭାଙ୍ଗି ପଡ଼ିଥିଲେ ଯେ, ସେ ବି ଅଧାପାଗଳଙ୍କ ପରି

ଝରକା ପାଖରେ ଠିଆହୋଇ କେତେବେଳୁ କେଜାଣି ଫୁଲ ବଷସ୍ବରେ ଏକ କରୁଣ ସଙ୍ଗୀତ ଗାଇ ବୁଲୁଥିଲେ—

ମରତ ମଣିଷ ନିଷ୍ଠୁର ହାତ ମତେ କି ପାଶବ ଦଳି ।
(ମୁଁ ଯେ) ସ୍ୱର୍ଗଭୂମିରୁ ଓହ୍ଲାଇଥିଲି ସ୍ୱର୍ଗକୁ ଯିବ ଚଳି ।୦।
ଚରଣ ଛୁଏଁ ମୋ ଧୂଳିର ଧରଣୀ
ଆକାଶ ଛୁଏଁ ମୋ ମଥା,
ଅନ୍ତରୁ ମୋର ଅମୃତ ଝରି ଧୋଇଦିଏ ସବୁ ବ୍ୟଥା,
ସୁର୍ଯ୍ୟ ଦିଏ ମୋ ଝଳ ।୧।

ଧଡ଼ଧାଡ଼ କରି କବାଟ ଖୋଲିଦେଇ ଗ୍ରାଇଫସ୍ ଗର୍ଜନ କରି ଉଠିଲା, “ଆବେ, ରଖ୍ ତୋ ଗୀତ । ଦେଖିବୁ ରହ ଏଇନେ ଦଳି ଦେଉଛି କି ନାହିଁ । କାହିଁ ? ମୋ ରୋଜା କାହିଁଗଲା ?”

“ରୋଜା ନାହିଁ !!” ବିସ୍ମିତ ହୋଇଗଲେ କର୍ଣ୍ଣେଲସ୍ବସ୍ ।

“ମୋ ଝିଅ କାହିଁଗଲା, କହୁଛୁ ନା ନାହିଁ ?”

“ରୋଜା ତାହାହେଲେ ଘରରେ ନାହିଁ ?” କର୍ଣ୍ଣେଲସ୍ବସ୍ ଆତୁର ହୋଇ ପଚାରିଲେ ।

“ସଇତାନ୍, କମିଆବାଲା ! କହୁଛୁ ନା ନାହିଁ ?” କହି ଗ୍ରାଇଫସ୍ ଠେଙ୍ଗା ଉଠାଇ ଆକ୍ରମଣ କରିବାକୁ ଧସିଗଲା । କର୍ଣ୍ଣେଲସ୍ବସ୍ ବୁଦ୍ଧିମାନ୍ । ସେ ଗୋଟାଏ କାଇଦାରେ ଗ୍ରାଇଫସ୍କୁ ଧରିପକାଇ ତା ହାତରୁ ଠେଙ୍ଗାଟା ଛଡ଼ାଇ ନେଇ ପାଲଟା ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇଗଲେ । କ୍ରୋଧାନ୍ଧ ଗ୍ରାଇଫସ୍ ହାତରୁ ଠେଙ୍ଗାଟା ଖସିଗଲା ଦେଖି ପୋଷାକ ଭିତରୁ ତାର ଲମ୍ବା ଛୁରୀଟା ଟାଣିଆଣି କର୍ଣ୍ଣେଲସ୍ବସ୍ଙ୍କୁ ଆକ୍ରମଣ କରିବାକୁ ମାଡ଼ି ଆସିଲା । ଠେଙ୍ଗା ବୁଲାଇ ଆତ୍ମରକ୍ଷା କରୁକରୁ କର୍ଣ୍ଣେଲସ୍ବସ୍ ଗ୍ରାଇଫସ୍ର ହାତ ଉପରେ ଗୋଟାଏ ଟାଣୁଆ ପ୍ରହାର ଦେଲେ । ଫଳରେ ଗ୍ରାଇଫସ୍ ହାତରୁ ଛୁରୀଟା ଖସିପଡ଼ିଲା । ତଳେ ପଡ଼ିଗଲା ଗ୍ରାଇଫସ୍ । ପ୍ରହାର ଉପରେ ପ୍ରହାର ଖାଇ ସେ ଆର୍ତ୍ତ ଚିତ୍କାର ଛାଡ଼ିଲା । ପାଟି ଶୁଣି ପ୍ରହରୀମାନେ ଦୌଡ଼ିଆସି କର୍ଣ୍ଣେଲସ୍ବସ୍ଙ୍କୁ ଜବତ କରି ଗ୍ରାଇଫସ୍କୁ ଉଦ୍ଧାର କରିନେଲେ । ଗ୍ରାଇଫସ୍

କଳର ଦୋଷ ଘୋଡ଼ାଇଦେଇ କର୍ଣ୍ଣେଲସ୍ବସ୍‌ଙ୍କ ବିରୁଦ୍ଧରେ ଗୋଟାଏ ଟାଣୁଆ ଅଭିଯୋଗ ଲେଖି ଉପର ମହଲକୁ ପଠାଇଦେଲି । ପ୍ରହରୀମାନଙ୍କର କଥା ଶୁଣାରୁ କର୍ଣ୍ଣେଲସ୍ବସ୍ ବୁଝିଗଲେ ଯେ ତାଙ୍କର ଏ ପ୍ରକାର ବ୍ୟବହାର ଲାଗି ତାଙ୍କୁ ନିଶ୍ଚୟ ପ୍ରାଣଦଣ୍ଡ ମିଳିବ । ସମ୍ଭବତଃ ତାଙ୍କୁ ସହର ମଝିରେ ଠିଆକରାଇ ଗୁଳି କରି ମାରିଦିଆଯିବ ।

ଠିକ୍ ତା ପରଦିନ ସନ୍ଧ୍ୟାର କଥା । ହାର୍ଲେମର ବିଖ୍ୟାତ ଟାଉନ୍-ହଲ୍‌ରେ ଗୋଟିଏ ସୁନା ଚଉକି ଉପରେ ହଲାଣ୍ଡର ଷ୍ଟେଡ୍ ହୋଲ୍‌ଡ଼ର ମହାରାଜା ଉଇଲିୟମ୍ ବସି କ'ଣ ଗୋଟାଏ ଲେଖୁଥାନ୍ତି । ଟିକିଏ ଦୂରରେ ଠିଆହୋଇଥାଏ ରୋଜା । ପାଖଆଖରେ ଅନ୍ୟ କେହି ନଥାନ୍ତି । ମହାରାଜା ଲେଖା ବନ୍ଦ କରି ରୋଜାକୁ କହିଲେ, "ଶୁଣ, ବାଳିକା ! ଆମେ ବର୍ତ୍ତମାନ ଏକାନ୍ତରେ ବସିଆଛୁ । ଅସଲ ସତ କଥାଟି କଣ, ମୋତେ ଖୋଲି କହିଦିଅ ।"

ରୋଜା ଭୟରେ ଥରିବାକୁ ଲାଗିଲା । ସବୁ ତ କହିସାରିଛି—ଆଉ କହିବ କଣ ? ମହାରାଜା ସେସବୁ କଥାକୁ ଅବିଶ୍ବାସ କରୁଛନ୍ତି ନା କଣ ? ସେ ଆକୁଳ ହୋଇ ମହାରାଜାଙ୍କ ମୁହଁକୁ ଗ୍ଭହିଁଲା । ଦେଖିଲା ମହାରାଜାଙ୍କ ବଦନରୁ ଝରିପଡ଼ୁଛି କରୁଣାର ଜ୍ୟୋତି । ତଥାପି କିଛି କହିବା ଲାଗି ତା ପାଟିକୁ ଭାଷା ଆସିଲାନାହିଁ ।

ଉଇଲିୟମ୍ ପଚାରିଲେ, "ତୁମେ ତୁମ ବାପାଙ୍କୁ କାହିଁକି ଖରାପ ଭାବୁଛ ?"

"ସେ ବଡ଼ ନିଷ୍ଠୁର, ମହିମା ! ବନ୍ଦୀମାନଙ୍କ ପ୍ରତି ଅତି ନିଷ୍ଠୁର ବ୍ୟବହାର କରନ୍ତି ।"

"ବିଶେଷତଃ କେଉଁ ବନ୍ଦୀକୁ ?"

"ବିଶେଷତଃ କର୍ଣ୍ଣେଲସ୍ବସ୍ ଭ୍ୟାନ୍ ବାର୍ଲିଙ୍କୁ, ଯେ କି...।"

"ତୁମ ପ୍ରେମିକ ?"

ଶଙ୍କିତା ହୋଇ ରୋଜା ପଛକୁ ଘୁଞ୍ଚିଗଲା । ସେ ଜଣାଇଲା, "ଯାହାଙ୍କୁ ମୁଁ ପ୍ରେମ କରୁଥିଲି, ମହିମା !"

"କେଉଁହ୍ରଦନଠାରୁ ?"

ଯେଉଁହ୍ରଦନ ତାଙ୍କୁ ବନ୍ଧକରି ଲୁଇଟେନ୍ ହମ୍ ଅଣାଗଲା, ସେହିହ୍ରଦନଠାରୁ ।"



ମହାରାଜାଙ୍କର କଣ୍ଠ ରୁଦ୍ଧ ହୋଇଗଲା । କି ସରଳ ସତ୍ୟ ! କି ଅନାବିଲ ପ୍ରେମ !! କିଛି ସମୟ ମୌନ ରହି ସେ ପଚାରିଲେ, "ଝିଅ, ଯେଉଁ

ଲୋକ ଯାବଜ୍ଜୀବନ କାରାଦଣ୍ଡ ଭୋଗକରି କାରାଗାରରେ ହିଁ ମୃତ୍ୟୁ ବରଣ କରିବ, ସେପରି ଲୋକକୁ ପ୍ରେମ କରି ଲାଭ କ'ଣ କହିଲ ?"

"ସେ ଯେଉଁଠି ଥାଆନ୍ତୁ ନା କାହିଁକି, ତାଙ୍କର ପତ୍ନୀ ହୋଇ ମୁଁ ସ୍ୱର୍ଗସୁଖ ଲାଭକରିବି, ମଣିମା ! ମୋର ଆଶା···।"

"କଣ ତୁମର ଆଶା ? କଣ ? କହିଦିଅ, ଝିଅ !"

"କହିବାକୁ ଚଳ ଓଲଟୁ ନାହିଁ, ମଣିମା !···ମୋର ଆଶା···।" କହୁ କହୁ ମୁଣ୍ଡ ପୋତିଦେଇ ସେ ଅଟକିଗଲା ।

"ତୁମେ କି ଆଶା କରୁଛ, ବିନା ସଂକୋଚରେ ପ୍ରକାଶ କର; ଶୁଣିବା ଲାଗି ଏଠାରେ ଅନ୍ୟ କେହି ନାହିଁ ।''—ଭରସା ଦେଲେ ମହାରାଜା ।

ରୋଜା ମୁହଁ ଟେକିଲା । ଆଖିରେ ତାର ଆନନ୍ଦର ଲୁହ; ଆଶାର ଆଲୋକ । ତାର ଅର୍ଥପୂର୍ଣ୍ଣ ଚାହାଣି ଅନ୍ତରର ସବୁ କଥା କହିଦେଉଥିଲା । ମହାରାଜା କହିଲେ, "ବୁଝିଲି ।"

ରୋଜାର ବନ୍ଧୂଲି ଅଧରରେ ଥରିଉଠିଲା ଆନନ୍ଦର ମୃଦୁ ହସ ।

"ତୁମର ଆଶା, ମୁଁ ତୁମକୁ ସାହାଯ୍ୟ କରିବି ।''

"ହଁ, ମଣିମା !'' ରୋଜାର ଆଖିରୁ ଝରିପଡ଼ିଲା କୃତଜ୍ଞତାର ଅଶ୍ରୁ । ମହାରାଜାଙ୍କର ପ୍ରଶାନ୍ତ ବଦନ ଆହୁରି ଉଜ୍ଜ୍ୱଳ ହୋଇଉଠିଲା । ସେ ଲେଖୁଥିବା କାଗଜଟିରେ ଆହୁରି କିଛି ଲେଖିଦେଇ ଦସ୍ତଖତ କରିଦେଲେ । ତା ଉପରେ ରାଜମୋହର ବସାଇଦେଇ ସେ ଜଣେ ସୈନିକ-କର୍ମଚାରୀଙ୍କୁ ଡାକି କହିଲେ, ''ଏ ପତ୍ର ନେଇ ଯଥାଶୀଘ୍ର ଲଭେଷ୍ଟିନ୍‌ର ଦୁର୍ଗପାଳଙ୍କୁ ଦିଅ । ସେ ଯେଉଁ ନିର୍ଦ୍ଦେଶ ଦେବେ ତଦନୁଯାୟୀ କାର୍ଯ୍ୟ କରିବ ।''

ସୈନିକ-କର୍ମଚାରୀ ଜଣକ ପତ୍ର ନେଇ ଚାଲିଯିବା ପରେ ମହାରାଜା ରୋଜାକୁ ପାଖକୁ ଡାକି କହିଲେ, "ଆଗାମୀ ରବିବାରଦିନ, ଅର୍ଥାତ୍ ପରଦିନ ଟ୍ୟୁଲିପ୍ ଉତ୍ସବ ପାଳିତ ହେବ । ତୁମେ ଏହି ସୁନ୍ଦରୀ ଗିଲଡାର୍ ଝିଅ । ମୋର ଇଚ୍ଛା ତୁମର ଏହି ପୁରୁଣା ପୋଷାକ ପରିଚ୍ଛଦ ରଖିଦେଇ, କିଛି

ସୁନ୍ଦର ନୂଆ ପୋଷାକ ପିନ୍ଧି, ବେଶଭୂଷା ହୋଇ ଉତ୍ସବ ଦେଖିବାକୁ ଆସିବ ।''

ରେଜା ମୁଣ୍ଡ ନୁଆଁଇ ପଚାରିଲା, "ମୁଁ କି ପ୍ରକାର ବେଶ ହୁଏ ବୋଲି ମହାରାଜାଙ୍କର ଇଚ୍ଛା ?''

ମହାରାଜା କହିଲେ, "ନବବଧୂର ବେଶ ହିଁ ତୁମକୁ ସୁନ୍ଦର ମାନିବ ।"

ଘଟଣାର ପରଦିନର କଥା । ରେଜାର ଅନ୍ତର୍ଦ୍ଧାନରେ କର୍ଣ୍ଣେଲିୟସ୍ ମ୍ରିୟମାଣ ହୋଇ ନିଜ କୋଠରି ଭିତରେ ବସିଥାନ୍ତି । ଖାଦ୍ୟ ନେଇ ଆସୁଥିବା ପ୍ରହରୀ କହିଗଲା ଯେ ତାଙ୍କୁ ତତ୍ ନେଇ ତାଙ୍କ ଘର ସାମନାରେ ଫାଶୀ ଦିଆଯିବ ବୋଲି ସେ ଶୁଣୁଥିଲା । ଏ ଦାରୁଣ ସମ୍ବାଦଟା କର୍ଣ୍ଣେଲିୟସ୍‌ଙ୍କ ପକ୍ଷରେ ଗୋଟାଏ ଆଶ୍ୱାସନା । ଶେଷ ସମୟକୁ ଅନ୍ତତଃ ନିଜ ପିତୃପିତା- ମହଙ୍କ ଭିଟାମାଟି ଦେଖି ପ୍ରାଣଯିବ । ଏହିଭଳି ନାନା ଚିନ୍ତା କରୁଛନ୍ତି, ଏତିକବେଳେ କୋଠରିର କବାଟ ଖୋଲିଗଲା । କର୍ଣ୍ଣେଲିୟସ୍ ଦେଖିଲେ ଜଣେ ସୈନିକ-କର୍ମଚାରୀ ଆସି ତାଙ୍କ କୋଠରିଭିତରେ ପଶିଗଲେ । ସେ ତାଙ୍କ ହାତଧରି ବାହାରକୁ ନେଇ ନେଇ କହିଲେ, "ମୋ ସହିତ ଆସ ।'' ଗ୍ରାଇଫସ୍ କହିଲା, "ହେଲା, ଏଥର ? ବନ୍ଦୀ ହୋଇ ପୁଣି ଏତେ ବହପ !!''

କର୍ମଚାରୀଟି କୌଣସି ବାକ୍ୟବ୍ୟୟ ନକରି କର୍ଣ୍ଣେଲିୟସ୍‌ଙ୍କୁ ନେଇ ଗୋଟିଏ ଗାଡ଼ିରେ ବସାଇଦେଲା । କିଛି ବୁଝିନପାରି କର୍ଣ୍ଣେଲିୟସ୍ ପଚାରିଲେ, "ମୋତେ କେଉଁଠାକୁ ନେଉଛନ୍ତି ?''

ଗ୍ରାଇଫସ୍ ଗୋଟାଏ ଅଟ୍ଟହାସ କରି କହିଲା, 'ଯମପୁରକୁ ଧନ, ଯମପୁରକୁ । ମୋ ଉପରକୁ ହାତ ଉଠାଇବାର ଫଳ ଶୀଘ୍ର ପାଇବୁ ।''
ଗ୍ରାଇଫସ୍ ହସୁଥାଏ, ଗାଡ଼ି ଛାଡ଼ି ଦେଲା । କର୍ଣ୍ଣେଲିୟସ୍ ବିଳାପ କରିବାକୁ ଲାଗିଲେ, "ଜୀବନଟା ତାହାହେଲେ ଏହିଭଳି ଶେଷ ହୋଇଗଲା !! ଜଗତରେ ନିଜର ନାମ ରଖିଯିବା ଲାଗି ବହିଖଣ୍ଡେ ଲେଖିପାରିଲିନାହିଁ, ପୁତ୍ରସନ୍ତାନଟିଏ ଜାତ କରିପାରିଲି ନାହିଁ କି ନିଜ ନାମରେ ଭଲ ଫୁଲଟିଏ

ଫୁଟାଇ ପାରିଲନାହିଁ । ଏପରି ଏକ ଅର୍ଥହୀନ ଅସାର ଜୀବନ କାହିଁକି ଦେଲ ପ୍ରଭୁ ?"

ଅବଶ୍ରାନ୍ତ ଗତିରେ ଗାଡ଼ି ଚାଲିଥାଏ । କାହିଁ ଡଚ୍ ପଥରେ ତ ଗାଡ଼ି ଯାଉନାହିଁ ! କର୍ଣ୍ଣେଲିୟସ୍ ଭାବିଲେ ତାଙ୍କୁ ଅନ୍ୟ କେଉଁଠି ପ୍ରାଣଦଣ୍ଡ ଦିଆଯିବ । ଦିନ ଯାଇ ରାତି ହେଲା । ଗାଡ଼ି ବନ୍ଦ ହେଲନାହିଁ । କର୍ମଚାରୀ ଜଣକ ପଥରମୂର୍ତ୍ତି ପରି ମୌନ ହୋଇ ବସିଥାଏ । ପରଦିନ ସନ୍ଧ୍ୟାରେ ଗାଡ଼ି ଆସି ପହଞ୍ଚିଲା ଏକ ଆନନ୍ଦମୁଖର ନଗରୀରେ । ଚାରିଆଡ଼େ ଉତ୍ସବର ସଙ୍କେତ, ଫୁଲର ତୋରଣ, ଫଳର ସମ୍ଭାର । ସେ ଦୃଶ୍ୟ ଦେଖି କର୍ଣ୍ଣେଲିୟସ ବିମୁଗ୍ଧ ହୋଇ ପଚାରିଲେ, "ଏ ନଗରଟିର ନାମ କଣ, ସାହେବ ?"

ଏତେବେଳେ କର୍ମଚାରୀଙ୍କର ପାଟି ଖୋଲିଲା, "ହାର୍ଲେମ ।"

ପୁଷ୍ପନଗରୀ ହାର୍ଲେମ ! ୧୬୭୩ ମସିହା ମଇ ପନ୍ଦର ତାରିଖ ରବିବାର ହାର୍ଲେମର ଏକ ସ୍ମରଣୀୟ ଦିବସ । ବହୁ ବିଘୋଷିତ କଳା ଟ୍ୟୁଲିପ୍‌ର ଶୁଭ ଅଭିଷେକ ଲାଗି ଫୁଲରସିକ ହାର୍ଲେମ୍‌ବାସୀଗଣ ଏକ ମହୋତ୍ସବର ଆୟୋଜନ କରିଥାନ୍ତି । ନଗରର ମଧ୍ୟସ୍ଥଳରେ ଏକ ବିରାଟ ସୁସଜ୍ଜିତ ମଣ୍ଡପ । ମଣ୍ଡପ ପାଖକୁ ଆସିଥିବା ବିଭିନ୍ନ ସଡ଼କରେ ଫୁଲଫଳ ଓ ରଙ୍ଗିନ୍ କାଗଜରେ ସଜ୍ଜିତ ତୋରଣ ପରେ ତୋରଣ ଶୋଭା ପାଉଥାଏ । ପାଖ-ଆଖ ଗ୍ରାମମାନଙ୍କରୁ ସହସ୍ର ସହସ୍ର ଦର୍ଶକ ଆସି ସ୍ଥାନଟିକୁ ମୁଖରିତ କରି ଦେଉଥାନ୍ତି । କର୍ଣ୍ଣେଲିୟସ୍‌ଙ୍କ ଗାଡ଼ି ଆସି ମଣ୍ଡପର ନିକଟବର୍ତ୍ତୀ ହେଲା । ବିମୁଗ୍ଧ କର୍ଣ୍ଣେଲିୟସ୍ ପଚାରିଲେ, "ଏଠାରେ କି ଉତ୍ସବ ପାଳିତ ହେଉଛି, ସାହେବ ?''

ଗମ୍ଭୀର ହୋଇ କର୍ମଚାରୀଟି କହିଲେ, "କଳା ଟ୍ୟୁଲିପ୍‌ର ଅଭିଷେକ ଉତ୍ସବ ।''

''କଳା ଟ୍ୟୁଲିପ୍ ? କଳା ଟ୍ୟୁଲିପ ? —ମତେ ଟିକିଏ ଛାଡ଼ନ୍ତୁ ସାହେବ, ମୁଁ ଟିକିଏ ଦେଖେ, ଜୀବନର ଶେଷଥର ପାଇଁ ଆଖି ପୂରାଇ ଦେଖେ ସେହି ସୌନ୍ଦର୍ଯ୍ୟର ରାଣୀ କଳା ଟ୍ୟୁଲିପ୍‌କୁ । ଛାଡ଼ନ୍ତୁ ସାହେବ,

ଛାଡ଼ନ୍ତୁ ।''—କହି କର୍ଣ୍ଣେଲ୍‌ସ୍ମିଥ୍ ଗାଡ଼ିତଳକୁ ଡେଇଁପଡ଼ିଲେ ।

କର୍ମଚାରୀଟି ପାଟିକରି ଉଠିଲେ, "ଧର, ଧରରେ କିଏସେ ଅଛ । ବନ୍ଦୀଟା ପାଗଳ ହୋଇଗଲା ନା କଣ !!"

ଠିକ୍ ସେତିକବେଳକୁ ଉତ୍ସବସ୍ଥଳ କୋଳାହଳରେ ଫାଟିପଡ଼ିଲା । କର୍ଣ୍ଣେଲ୍‌ସ୍ମିଥ୍‌ଙ୍କ ଗାଡ଼ି ପାଖରେ ଆସି ଗୋଟିଏ ବହୁରଙ୍ଗ ବିଶୋଭିତ ଗାଡ଼ି ଅଟକିଗଲା । ଗାଡ଼ି ଭିତରୁ ମୁହଁ କାଢ଼ି ଜଣେ କେହି ପଚାରିଲା, ''କିଏ, କିଏ ସେ ଲୋକଟା ?"

ସୈନିକ-କର୍ମଚାରୀ ସାଲ୍ୟୁଟ୍ ଜଣାଇ କହିଲେ, "ମହାରାଜ, ଏ ଲୋକଟି ସେହି ବନ୍ଦୀ ଯାହାକୁ ଆଣିବାଲାଗି ମଣିମା ମୋତେ ଲିଭେଷ୍ଟିନ୍ ପଠାଇଥିଲେ ।''

''ବେଶ୍, ବେଶ୍ । ଟିକିଏ ଛାଡ଼ିଦିଅ ବିଚରାକୁ ! ଆଖିପୂରାଇ ଟିକିଏ ଉତ୍ସବ ଦେଖୁ ।" କହି ମହାରାଜା ଟ୍ୟୁଲିପ୍‌ମଣ୍ଡପ ଉପରକୁ ଉଠିଗଲେ ।

ମଣ୍ଡପର କେନ୍ଦ୍ରରେ ଏକ କାରୁକାର୍ଯ୍ୟ ଖଚିତ ସୁନ୍ଦର ଟେବୁଲ ପଡ଼ିଥାଏ । ଟେବୁଲର ଚାରିଧାରରେ ବିଭିନ୍ନ ଭଙ୍ଗୀରେ ଧାଡ଼ି ହୋଇ ସଜାଯାଇଥାଏ ଶହ ଶହ ସଂଖ୍ୟାରେ ବିଭିନ୍ନ ଜାତିର ଟ୍ୟୁଲିପ୍ । ନାନା ରଙ୍ଗର ପୋଷାକ ପରିଚ୍ଛଦ ପିନ୍ଧି ଟେବୁଲର କଡ଼େ କଡ଼େ ମଣ୍ଡୁଆଳି ହୋଇ ନୃତ୍ୟ କରୁଥାନ୍ତି ଗୁଡ଼ିଏ ଭାବବିହ୍ୱଳା ସୁନ୍ଦରୀ ତରୁଣୀ । ଟେବୁଲର ଠିକ୍ ମଧ୍ୟଭାଗରେ ସବୁରି ସୁଷମାକୁ ନିନ୍ଦିତକରି ଉଚ୍ଚ ଆସନ ଉପରେ ନିଜର ଗର୍ବିତ ମଥାଟେକି ଶୋଭା ପାଉଥାଏ ସମସ୍ତଙ୍କର ନୟନପିତୁଳା ସେହି କଳାଟ୍ୟୁଲିପ୍ ଫୁଲଟି । ମହାରାଜା ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସଭାପତି ଭ୍ୟାନ୍ ହ୍ୟାରିସନ୍ ତାଙ୍କର ବକ୍ତୃତା ପାଠ କରିଦେଲେ । ବିଶିଷ୍ଟ ଅତିଥିମାନଙ୍କର ଗୋଟିଏ ପାଖରେ ରୋଜା ଓ ଅନ୍ୟ ପାଖରେ ବକ୍‌ସଟେଲ ଉଦ୍‌ବେଗ ସହକାରେ ଅପେକ୍ଷା କରିଥାଆନ୍ତି । ଦେଖାଗଲା କର୍ଣ୍ଣେଲ୍‌ସ୍ମିଥ୍ ଲୋକଗହଳି ଭିତରେ ବାଟ କାଟି ଟ୍ୟୁଲିପ ଟେବୁଲ ପାଖକୁ ଚାଲିଆସିଲେ । ଆତ୍ମବିସ୍ମୃତ ହୋଇ ସେ ଚାହିଁରହିଲେ ନିଜର ଅପରୂପ ସୃଷ୍ଟିକୁ ।

ସଭାପତି ନିଜର ବକ୍ତୃତା ପାଠକରିସାରିବା ପରେ ଏକ ଲକ୍ଷ ଗିଲଡ଼ାର ରଖାଯାଇଥିବା ଏକ ବିରାଟ ସିଲ୍କ୍ ଥଳୀ ଦେଖାଇ କହିଲେ, "ବର୍ତ୍ତମାନ ମୁଁ ହଲଣ୍ଡର ଷ୍ଟଡ଼ ହୋଲ୍ଡ଼ର ମହାରାଜା ଉଇଲସ୍ୱମ୍ଙ୍କୁ ସମସ୍ତ ହାର୍ଲେମବାସୀଙ୍କ ପକ୍ଷରୁ ଅନୁରୋଧ କରୁଛି, କଳା ଟ୍ୟୁଲପ୍‌ର ଆବିଷ୍କର୍ତ୍ତାଙ୍କୁ ମହାରାଜା ଏ ଏକଲକ୍ଷ ଗିଲଡ଼ାର ପୁରସ୍କାର ପ୍ରଦାନ କରନ୍ତୁ ।"

ବକ୍‌ସଟେଲ୍‌ର ସମସ୍ତ ଲୋଲୁପ ଦୃଷ୍ଟି ଯାଇ ସେହି ସିଲ୍କ୍‌ଥଳୀ ଉପରେ ନିବଦ୍ଧ ହୋଇଗଲା । ମହାରାଜାଙ୍କ ମୁଖରୁ କଥା ବାହାରିବା ମାତ୍ରେ ସେ ଥଳୀଟା ଉଠାଇନେଇ ପଳାଇବାକୁ ପ୍ରସ୍ତୁତହୋଇ ରହିଲା ।

ମହାରାଜା ରାଜକୀୟ ଭଙ୍ଗୀରେ ଠିଆହୋଇ ଘୋଷଣାକଲେ—

"କଳା ଟ୍ୟୁଲପ୍‌ର ଆବିଷ୍କାରକଙ୍କ ହାତରେ ମୁଁ ଏହି ପୁରସ୍କାର ଅର୍ପଣ କରିବି । ଆସ, କଳା ଟ୍ୟୁଲପ୍‌ର ଆବିଷ୍କାରକ ! ନିଅ ତୁମ ପ୍ରତିଭାର ପୁରସ୍କାର ।"

ସଙ୍ଗେ ସଙ୍ଗେ ବକ୍‌ସଟେଲ ସିଂହାସନମରେ ମାଡ଼ିଆସିଲା । ରୋଜା ବି ଆଗେଇ ଆସିଲା ଏବଂ "ରୋଜା ରୋଜା !!" ବୋଲି ଚିତ୍କାର କରି ଛୁଟି ଆସିଲେ ବନ୍ଦୀ କର୍ଣ୍ଣେଲିୟସ୍ । ମହାରାଜା ବକ୍‌ସଟେଲ୍‌କୁ ନ ଚାହିଁ ରୋଜାର ହାତ ଧରି ପଚାରିଲେ, "ଏ କଳା ଟ୍ୟୁଲପ୍ ତାହାହେଲେ ତୁମର ଆବିଷ୍କାର, ନୁହେଁ ମା ?"

ରୋଜାର ଉତ୍ତର ଶୁଣିବାଲାଗି ଆକାଙ୍‌କ୍ଷିତ ହୋଇ ଚାହିଁ ରହିଲେ କର୍ଣ୍ଣେଲିୟସ୍ । ରୋଜାର ଉତ୍ତର ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଲା । ସେ ମନ୍ଦ୍ରମଧୁର ସ୍ୱରରେ କହିଲା, "ମଣିମା, ମୋର ନୁହେଁ । ମୋର ପ୍ରିୟତମ ଏହି ଡାକ୍ତର କର୍ଣ୍ଣେଲିୟସ ଭ୍ୟାନ୍ ବାର୍ଲି ହିଁ ଏହାର ଆବିଷ୍କର୍ତ୍ତା ।"

ମହାରାଜା ରୋଜାର ହାତ ନେଇ କର୍ଣ୍ଣେଲିୟସ୍‌ଙ୍କ ହାତରେ ଧରାଇ ଦେଇ ଆନନ୍ଦ ଗଦ୍‌ଗଦ କଣ୍ଠରେ ଘୋଷଣା କଲେ, "ଧନ୍ୟ ରୋଜା ଗ୍ରାଇଫସ୍ ! ହଲଣ୍ଡ ତୁମକୁ ଚିରଦିନ ସ୍ମରଣ ରଖିବ । ଏହି ମହାସ୍ଥାନ୍ କଳା ଟ୍ୟୁଲପର ନାମ ଆଜଠାରୁ 'ରୋଜା ବାର୍ଲିଏନ୍ ସିସ୍' ହୋଇ ରହିଲା ।"

ଜୟଜୟକାରରେ ନିନାଦିତ ହୋଇଗଲା ଟ୍ୟୁଲିପ୍ ମଣ୍ଡପ । ବିବାହର ମଙ୍ଗଳବାଦ୍ୟରେ ଚତୁର୍ଦ୍ଦିଗ ମୁଖରିତ ହୋଇଗଲା । ଠିକ୍ ସେତିକବେଳେ ଦେଖାଗଲା ଜଣେ ଲୋକ ହତଜ୍ଞାନ ହୋଇ ମଣ୍ଡପ ଉପରେ ଟଳିପଡ଼ିଲା । ସେ ଲୋକଟା କିଏ, ତାହା ଅନୁମାନ କରିପାରୁଥିବେ, କିନ୍ତୁ କେହି ସେଥିରେ ବିଚଳିତ ହେବାର ଦେଖାଗଲା ନାହିଁ । କଳା ଟ୍ୟୁଲିପ୍ର ଅଭିଷେକ ଉତ୍ସବ ସହିତ ଗ୍ରେଜା-ବାର୍ଲିଙ୍କର ବିବାହ ଉତ୍ସବରେ ହାର୍ଲେମ ସହର ଆନନ୍ଦମୁଖର ହୋଇଉଠିଲା ।

---